ଭାରତ-ତିବ୍ବତ ମୈତ୍ରୀ ସଂଘ
ଓଡ଼ିଶା ଶାଖା ତରଫରୁ ପ୍ରକାଶିତ

# ତିବ୍ବତ

ସଂପାଦନା
ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ

ଇଂକ୍ ଓଡ଼ିଶା



ଡ. ଦେବୀପ୍ରସନ୍ନ ପଟ୍ଟନାୟକ

## ସଂ ପା ଦ କୀ ୟ

ଭାରତ ତିବ୍ବତ ଭିତରେ ସମ୍ପର୍କ ବହୁ ପୁରୁଣା । ଭାରତ ଓ ଚୀନ ମଧ୍ୟରେ ହିମାଳୟ କେତେ ହଜାର ବର୍ଷ ଧରି ପାରମ୍ପରିକ ଜଗୁଆଳ ଭାବେ କାମ କରିଛି । ଆଫଗାନିସ୍ତାନ, ତିବ୍ବତ, ନେପାଳ ଓ ବର୍ମା ଗୋଟିଏ ପଟେ ଚୀନ ଓ ଋଷିଆ ଏବଂ ଅନ୍ୟପଟେ ଭାରତ, ପାକିସ୍ତାନ, ବାଙ୍ଗଲାଦେଶ ଓ ଶ୍ରୀଲଙ୍କାକୁ ପଣତ ଉହାଡ଼ କରି ରଖିଛନ୍ତି । ଇଉରୋପୀୟ ପଣ୍ଡିତମାନେ ଦକ୍ଷିଣ ଏସିଆ ଓ ଦକ୍ଷିଣ ପୂର୍ବ ଏସିଆ କହି ଏହି ଅଞ୍ଚଳ ଓ ଲୋକଙ୍କ ଭିତରେ ଯେଉଁ ବିଭାଜନ କଲେ, ଏହାର ସୁଯୋଗ ଚୀନ ନେଲା । ତିବ୍ବତ, ଥାଇଲାଣ୍ଡ ଓ ମଙ୍ଗୋଲିଆ ଚୀନ ଅର୍ଥରେ ମଙ୍ଗୋଲ ନୋହିଥିଲେ ସୁଦ୍ଧା, ଏବଂ ମନ ଓ ହୃଦୟରେ ଭାରତର ନିକଟରେ ଥିଲେ ସୁଦ୍ଧା ଚୀନ ସେମାନଙ୍କୁ ଜାତିଭାଇ କରି ଆପଣା ଆଡ଼କୁ ଟାଣିଲାବେଳେ ଭାରତର ହିମାଳୟ ନୀତିର ଅଭାବ ହେତୁ ସେମାନଙ୍କର ସ୍ୱୟଂଶାସନ ବଞ୍ଚେଇ ରଖିବା କଠିଣ ହୋଇ ଉଠିଚି ।

ଭାରତର ଅଜ୍ଞତା ଓ ଅନାଗ୍ରହ ଫଳରେ ଏସିଆ ଶବ୍ଦର ଉତ୍ପତ୍ତି ଯେ ଇଉରୋପୀୟ କିମ୍ବା ଚୀନ ନୁହେଁ ଭାରତୀୟ ଏକଥା ଆମେ ଭୁଲି ଯାଇଚେ । ଭାରତୀୟ ଉଷା କିମ୍ବା ଉଷସ୍ 'ଉଇଁ ଆସୁଥିବା ସୂର୍ଯ୍ୟର ଦେଶ' ଯେ ଏସିଆର ମୂଳ ଏକଥା ଆମେ ଭୁଲିଯାଇଚେ । ମାଉଣ୍ଟ

ଏଭରେଷ୍ଟ ସର୍ଗମଥା ବା ସାଗର ମଥା, ଏବଂ ଉତ୍ତର ପୂର୍ବାଞ୍ଚଳ ଉର୍ବଶୀୟମ୍ ନାମରେ ଖ୍ୟାତଥିଲା । ଏହି ଗୌରବ ଗାଥା ଆମ ମନରୁ କ୍ରମେ ପୋଛି ହୋଇ ଯାଉଚି । ମାନସରୋବରର ଉତ୍ତରରେ ଥିବା ମାନସର ଗ୍ରାମ ଯେ ଭାରତ ସରକାରଙ୍କୁ ଏବେ ଯାଏ ଖଜଣା ଦେଉଥିଲା ଏବଂ ଏହା ୧୯୪୮ ଆଗ ପର୍ଯ୍ୟନ୍ତ ଭାରତୀୟ ଜନଗଣନାର ଅନ୍ତର୍ଭୁକ୍ତ ଥିଲା ଏହା କହିବାକୁ ମଧ୍ୟ ଆମେ ସାହସ ହରେଇ ବସିଛୁ । ତିବ୍ବତର ସ୍ୱାୟତ୍ତଶାସନ ବିଷୟରେ ନିଗୂଧ ହେବା ଆଗରୁ ତିବ୍ବତ ଉପରେ ଚୀନର ସାର୍ବଭୌମତା ସ୍ୱୀକାର କରିବା ଭାରତୀୟ ବୈଦେଶିକ ନୀତିର ଦୁର୍ବଳତା । ଆମର ବିଶ୍ୱାସ ଯେ ରାଜନୈତିକ ନୋହିଲେ ସୁଦ୍ଧା ନୈତିକ ଦୃଷ୍ଟିକୋଣରୁ ତିବ୍ବତ ସ୍ୱୟଂଶାସନ ପାଇଁ ଭାରତର ପ୍ରତିବଦ୍ଧତା ପ୍ରକାଶକରିବା ଏହି ମୈତ୍ରୀସଂଘର କର୍ତ୍ତବ୍ୟ ।

ଭାରତ ତିବ୍ବତ ସମ୍ପର୍କ ବୌଦ୍ଧ ଧର୍ମରେ ସୀମିତ ନୁହେଁ । ସଂସ୍କୃତିଗତ ନିକଟତା ହଜାର ହଜାର ବର୍ଷର ସମ୍ପର୍କରେ ଆଧାରିତ । ତିବ୍ବତୀ ଲିପି ଓଡ଼ିଶାରୁ ଯାଇଥିଲା । ଓଡ଼ିଆ ସାର୍ଥବାହ ମାନେ ହିମାଳୟ ଦେଶମାନଙ୍କୁ ବାଣିଜ୍ୟ ପାଇଁ ଯାଉଥିଲେ । ଏବେ ବି ସିଲ୍କରୁଟ (ପାଟମଠାର ବାଟ) ଆମ ପୁରୁଣା ସମ୍ପର୍କର ସନ୍ତକ ।

ତିବ୍ବତ ଭାରତର ଦୁଃଖ । ଚୀନର ବିଶ୍ୱାସଘାତକତାର ଗୋଟିଏ ସନ୍ତକ ତିବ୍ବତ । ଏହି ବିଶ୍ୱାସଘାତକତା ଯେ ଆମକୁ ବାହାର ଦେଶ ମାନଙ୍କ ଆଗରେ ଲଜ୍ଜିତ କଲା ନୁହେଁ, ଏହା ଆମକୁ ନିଜ ଆଗରେ ସାନ କରିଦେଲା । ଯେକୌଣସି ଜାତିର ବଞ୍ଚିବା ପାଇଁ ଆପଣା ଅସ୍ମିତା ପାଇଁ ଗର୍ବ ଏକାନ୍ତ ପ୍ରୟୋଜନ । ଭାରତ ପରି ବନ୍ଧୁ ସଂସ୍କୃତିର ଦେଶ ତିବ୍ବତୀଙ୍କ ଅସ୍ମିତାକୁ ସାମ୍ରାଜ୍ୟବାଦୀଙ୍କ ହାତକୁ ଟେକି ଦେବାଠାରୁ ବଡ଼ ଲାଜ କିଛି ହୋଇପାରେନାହିଁ । ସଂସ୍କୃତି ଥରେ ନଷ୍ଟ ହୋଇଗଲେ ତାର ପୁନର୍ଗଠନ ଅସମ୍ଭବ । ତେଣୁ ଏବେ ବି ଚୀନ ପୂଜ୍ୟଦଲାଇଲାମାଙ୍କ ସହ ତିବ୍ବତର ବର୍ତ୍ତମାନ ଓ ଭବିଷ୍ୟତ ଆଲୋଚନା କରିବା ପାଇଁ ପ୍ରଶସ୍ତ ରାସ୍ତା ରହିଚି । ବିଶେଷ କରି ଯେତେବେଳେ ପୂଜ୍ୟ ଦଲାଇଲାମା କେତେକ ସର୍ତ୍ତରେ ଚୀନର ସାର୍ବଭୌମତ୍ୱ ସ୍ୱୀକାର କରିବାକୁ ତିଆରେ, ସେତେବେଳେ ଅତୀତକୁ ଭୁଲି ଉଭୟ ପକ୍ଷ ଆଲୋଚନା ପାଇଁ ଆଗେଇ ଆସିବା ଉଚିତ । ଭାରତ ତିବ୍ବତ ମୈତ୍ରୀସଂଘ ଏଥିପାଇଁ ଉପଯୁକ୍ତ ବାତାବରଣ ତିଆରି କରିବା ପାଇଁ ପ୍ରସ୍ତୁତ ।

ଦୁର୍ଭାଗ୍ୟର କଥାଯେ ଚୀନ ତିବ୍ବତକୁ ଆପଣାର ଅଭିନ୍ନ ଅଙ୍ଗ କହିଲାବେଳେ ଚୀନର ଲୋକଙ୍କୁ ଯେଉଁ ନ୍ୟୂନତମ ମାନବିକ ଅଧିକାର ଦିଆଯାଉଚି, ତାହା ତିବ୍ବତୀୟଙ୍କୁ ଦିଆଯାଉନାହିଁ । ପ୍ରଥମେ ତିବ୍ବତୀଙ୍କୁ ବେଘର କରାଯାଉଚି । ସେମାନଙ୍କ ମଝିରେ ଚୀନା ବସତି କରାଯାଉଚି । ଜୋର ଜବର ଦସ୍ତ ତିବ୍ବତୀ ଝିଅଙ୍କୁ ଚୀନାମାନଙ୍କ ସହ ବାହା କରାଯାଉଚି । ତିବ୍ବତୀ ଧର୍ମ ଗୁମ୍ଫା ମାନଙ୍କୁ ଧ୍ୱଂସ କରିଦିଆଯାଉଚି । ଏହା ଫଳରେ ଏହି ଗୁମ୍ଫା ମାନଙ୍କରେ

ଥିବା ଅମୂଲ୍ୟ ଗ୍ରନ୍ଥ, ପୁରୁଣା ଚିତ୍ର ଓ ଅନେକ ସାଂସ୍କୃତିକ ସମ୍ପଦ ଲୋପପାଇଯାଇଛି ।

ଏହି ବହି ନା ତିବ୍ବତର ଇତିହାସ ନା ତିବ୍ବତୀ ସଂସ୍କୃତିର ଇତିହାସ । ଏହା ନା ଲାମାଧର୍ମର ଇତିହାସ ନା ତିବ୍ବତୀ ବୌଦ୍ଧ ଧର୍ମର ଇତିହାସ । ତିବ୍ବତ ବିଷୟରେ ଆମର ପରିଚୟ ଅତି ଅଳ୍ପ । ତେଣୁ ମୈତ୍ରୀସଂଘର ଉଦ୍‌ଯାପନେ ଉତ୍ସବରେ ମୋ ଅନୁରୋଧର ଉତ୍ତରରେ ଯେଉଁମାନେ ଲେଖାଦେବାକୁ ରାଜି ହୋଇଥିଲେ ସେମାନଙ୍କ ଲେଖା ନେଇ ଏ ବହି ଛପାଯାଉଛି । ସମୟ ଅଳ୍ପ । ତା' ଭିତରେ ଯେଉଁମାନେ ଲେଖା ଦେଇଛନ୍ତି ସେମାନଙ୍କ ପାଖରେ ମୁଁ ବ୍ୟକ୍ତିଗତ ଭାବରେ ଏବଂ ମୈତ୍ରୀସଂଘ ସାମଗ୍ରିକ ଭାବରେ କୃତଜ୍ଞ ।

ପଦ୍ମଶ୍ରୀ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ

(ସଂପାଦକ, ଭାରତର ଜଣେ ଖ୍ୟାତିସଂପନ୍ନ ଭାଷାବିଜ୍ଞାନୀ ଏବଂ ଭାରତ-ତିବ୍ବତ ମୈତ୍ରୀସଂଘ ଓଡ଼ିଶା ଶାଖାର ସଭାପତି)



ଡକ୍ଟର ବିମଳେନ୍ଦୁ ମହାନ୍ତି

# ପ୍ର କା ଶ କୀ ୟ

ଭାରତ ଓ ତିବତ ମଧ୍ୟରେ ସମ୍ପର୍କ ସମୟର କଷଟି ପଥରରେ ପରୀକ୍ଷ ହୋଇଛି । ଉଭୟ ଦେଶ ମଧ୍ୟରେ ଭୌଗୋଳିକ, ସାଂସ୍କୃତିକ, ଆଧ୍ୟାତ୍ମିକ ଓ ରାଜନୈତିକ ସମ୍ପର୍କ କାହିଁ କେଉଁ କାଳରୁ ରହିଆସିଛି । ତିବତର ସ୍ୱାଧୀନତା ଓ ସାର୍ବଭୌମତା ନେଇ ଆଜି ବିଶ୍ୱବ୍ୟାପୀ ଯେଉଁ ସଚେତନତା ଦେଖାଦେଇଛି ତା'କୁ ଦୃଷ୍ଟିରେ ରଖି ସ୍ଥାପନ କରାଯାଇଛି ଭାରତ-ତିବତ ମୈତ୍ରୀ ସଂଘ । ସୌଭାଗ୍ୟର ବିଷୟ, ସଂଘର ଓଡ଼ିଶା ଶାଖା ଇତିମଧ୍ୟରେ ଆନୁଷ୍ଠାନିକ ଭାବେ ଉଦ୍‌ଘାଟିତ ହୋଇଯାଇଛି । ଓଡ଼ିଶା ଶାଖା ତରଫରୁ ଉଦ୍‌ଘାଟନୀ ସମାରୋହରେ ନିଆଯାଇଥିବା କେତେକ ପଦକ୍ଷେପର ଫଳସ୍ୱରୂପ ଏହି ପୁସ୍ତକ 'ତିବତ' ଆତ୍ମପ୍ରକାଶ କରୁଛି । ଲୌହମାନବ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଦିନେ କହିଥିଲେ, "The tragedy of Tibet is that the Tibetans put faith in us : they choose to be guided by us and we have been unable to get them out of the meshes of Chinese diplomacy or Chinese malevolence" ସେହିପରି ବିଜ୍ଞାନାୟକ ସି. ରାଜଗୋପାଳାଚାରୀ ମନ୍ତବ୍ୟ ଦେଇ କହିଥିଲେ, "The invasion of Tibet which terminated in His Holiness taking refuge

in Indian territory is brutal colonialism" ଆଜି 'ତିବ୍ବତ' ଆତ୍ମପ୍ରକାଶ ପାଇଁ ମୈତ୍ରୀ ସଂଘର ସର୍ବଭାରତୀୟ ସଭାପତି ଲୋକସଭାର ପୂର୍ବତନ ବାଚସ୍ପତି ଶ୍ରୀ ରବିରାୟ, ଭାରତୀୟ ଭାଷା ସଂସ୍ଥାନର ପ୍ରତିଷ୍ଠାତା ନିର୍ଦ୍ଦେଶକ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଅବଦାନ ସ୍ମରଣଯୋଗ୍ୟ । 'ତିବ୍ବତ' ପାଇଁ ଲେଖା ସଂଗ୍ରହ ଓ ସଂଶୋଧନରେ ସହଯୋଗ କରିଥିବା ପୁତ୍ର ପ୍ରତିମ ଶ୍ରଦ୍ଧେୟ ଦେବାଶିଷ ଏବଂ ପ୍ରକାଶନ ଓ ବିତରଣ ପାଇଁ ଆଗଭର ହୋଇଥିବା ଆୟୁଷ୍ମାନ୍ ସରୋଜଙ୍କୁ ଏହି ଅବସରରେ ଅନ୍ତରର ଗଭୀରତମ ପ୍ରଦେଶରୁ କୃତଜ୍ଞତା ଜ୍ଞାପନ କରୁଛି । ଏହି ପୁସ୍ତକ ପ୍ରକାଶନ ସହ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସଂପୃକ୍ତ ସମସ୍ତ ବ୍ୟକ୍ତିବିଶେଷଙ୍କୁ ଇତ୍ୟବସରରେ ସାଧୁବାଦ ଓ ଶୁଭେଚ୍ଛା ଜଣାଉଛି ।

ଡକ୍ଟର ବିମଳେନ୍ଦୁ ମହାନ୍ତି

# ସୂଚୀପତ୍ର

# ଲାମା ତାରାନାଥଙ୍କ ବିବରଣୀରେ ଓଡ଼ିଶାରେ ବୌଦ୍ଧଧର୍ମ

ଡକ୍ଟର କରୁଣା ସାଗର ବେହେରା

ତିବ୍ବତର ବିଶିଷ୍ଟ ଗବେଷକ ଲାମା ତାରାନାଥ ''ଭାରତ ବର୍ଷରେ ବୌଦ୍ଧଧର୍ମର ଇତିହାସ'' ନାମକ ଏକ ଗ୍ରନ୍ଥ ୧୬୦୮ ମସିହାରେ ରଚନା କରିଥିଲେ । ଏଥିରେ କେବଳ ବୌଦ୍ଧଧର୍ମ ସମ୍ବନ୍ଧରେ ବିବରଣୀ ବ୍ୟତୀତ ଭାରତର ଇତିହାସ ସମ୍ବନ୍ଧରେ ଅନେକ ତଥ୍ୟ ରହିଛି । ୧୮୬୯ରେ ଏହା ଜର୍ମାନ ଓ ରୁଷଭାଷାରେ ଅନୁବାଦ କରାଯାଇଥିଲା । ଏହି ଗ୍ରନ୍ଥଟି ତିବ୍ବତୀୟ ଭାଷାରୁ ଇଂରାଜୀ ଅନୁବାଦ କରିଛନ୍ତି ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ଲାମାଚିମ୍ପା ଓ ବିଦ୍ୟାସାଗର ମହିଳା କଲେଜର ଅଧ୍ୟକ୍ଷା ଅଳକା ଚଟ୍ଟୋପାଧ୍ୟାୟ । ବିଶିଷ୍ଟ ଗବେଷକ ଅଧ୍ୟାପକ ଦେବୀ ପ୍ରସାଦ ଚଟ୍ଟୋପାଧ୍ୟାୟଙ୍କ ସମ୍ପାଦନାରେ ୧୯୦୭ ମସିହାରେ ଏହା ପ୍ରକାଶିତ ହୋଇଥିଲା ।

ଏ ଗ୍ରନ୍ଥରେ ଲାମାତାରାନାଥ ଓଡ଼ିଶାର ବୌଦ୍ଧଧର୍ମର ପ୍ରାରମ୍ଭ ଓ ବିକାଶ ସମ୍ବନ୍ଧରେ ଅନେକ ତଥ୍ୟ ଦେଇଛନ୍ତି । ଭାରତ ବର୍ଷରେ ବୌଦ୍ଧଧର୍ମର ଆଲୋଚନା କରିବାକୁ ଯାଇ ସେ ଅଜାତଶତ୍ରୁ, ଚନ୍ଦ୍ରଗୁପ୍ତ, ବିନ୍ଦୁସାର, ଅଶୋକ, ବୁଦ୍ଧପକ୍ଷ, ପାଳସେନ ରାଜବଂଶ, କାଶ୍ମୀର ରାଜାମାନଙ୍କ ସମୟରେ ବୌଦ୍ଧଧର୍ମର ପ୍ରସାର ସମ୍ବନ୍ଧରେ ବିବରଣୀ ଦେବା ସହିତ ବୌଦ୍ଧ ଭଟ୍ଟାରକ ଓ ବୌଦ୍ଧ ଧର୍ମାବଲମ୍ବୀ ବ୍ରାହ୍ମଣମାନଙ୍କ ସମ୍ପର୍କରେ ତଥ୍ୟ ପ୍ରଦାନ କରିଛନ୍ତି । ତାଙ୍କ ଗ୍ରନ୍ଥରେ ଓଡ଼ିଶାକୁ ''ଓଡ଼ିବିଶ'' ବା ''ଓଡ଼ିଶ'' ବୋଲି ଉଲ୍ଲେଖ କରିଛନ୍ତି । ପ୍ରାୟତଃ ଚତୁର୍ଦ୍ଦଶ ଶତାବ୍ଦୀରୁ ମୁସଲମାନ ଇତିହାସ ଲେଖକମାନେ ଏହି ଅଞ୍ଚଳକୁ ''ଉଡ଼ିଶା'' ବୋଲି କହୁଥିଲେ । ଶାରଳା ମହାଭାରତ ତଥା ସୂର୍ଯ୍ୟବଂଶୀ ଗଜପତି ମାନଙ୍କ ଅଭିଲେଖରେ ଏ ଅଞ୍ଚଳର ନାମ ''ଓଡ଼ିଶା'' ବୋଲି କୁହାଯାଇଛି । ତାରାନାଥଙ୍କର ''ଓଡ଼ିବିଶ'' ଓଡ଼ିଶାକୁ ବୁଝାଏ ।

ବୌଦ୍ଧଧର୍ମ ଇତିହାସରେ ଅଶୋକଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ତାରାନାଥଙ୍କ ବିବରଣୀ ଅନୁସାରେ ଅଶୋକଙ୍କର ଏଗାର ଜଣ ସନ୍ତାନ ଥିଲେ । କୁନାଳ ସେଥିମଧ୍ୟରୁ ଅନ୍ୟତମ । ସେ ରାଜା ହୋଇନଥିଲେ । ତାଙ୍କର ପୁତ୍ର ବିଗତଶୋକ ସିଂହାସନ ଆରୋହଣ କରିଥିଲେ । ସେହି ସମୟରେ ରାଘବ ନାମରେ ଜଣେ ବ୍ରାହ୍ମଣ ଓଡ଼ିବିଶରେ ଥିଲେ । ସେ ବଡ଼ ଧନୀ ଥିଲେ ଓ ତ୍ରିରତ୍ନରେ ବିଶ୍ୱାସ କରୁଥିଲେ । ସେ ପ୍ରତ୍ୟେକ ଦିନ ଏକଲକ୍ଷ

ଭିକାରୀଙ୍କୁ ଦାନ ଦେଉଥିଲେ । ତାରାନାଥ କହନ୍ତି ରାଜା ମହାପଦ୍ମଙ୍କର କିଛି ସମୟ ପରେ ଚନ୍ଦ୍ର ରକ୍ଷିତ ଓଡ଼ିବିଶର ରାଜା ହୋଇଥିଲା । କୁହାଯାଇଛି "ଆର୍ଯ୍ୟମଞ୍ଜୁଶ୍ରୀ ଜଣେ ବୌଦ୍ଧ ସନ୍ନ୍ୟାସୀ ବେଶରେ ତାଙ୍କ ଘରକୁ ଆସିଥିଲେ । ମହାଯାନର ତତ୍ତ୍ୱ ବିଷୟରେ ତାଙ୍କୁ ଶିକ୍ଷା ଦେଇଥିଲେ ଏବଂ ଗୋଟିଏ ପୁସ୍ତକ ଛାଡ଼ି ଯାଇଥିଲେ । ସେ ପୁସ୍ତକଟି ହେଉଛି "ପ୍ରଜ୍ଞାପାରମିତା ଅଷ୍ଟସାହସ୍ରିକା"। ବୁଦ୍ଧଙ୍କର ନିର୍ବାଣ ପରେ ଏହା ହେଉଛି ମହାଯାନ ଧର୍ମର ମାନବ ସମାଜରେ ପ୍ରଥମ ପ୍ରକାଶ" । ଏ ବିବରଣୀରୁ ସୂଚିତ ହୁଏ ଯେ ଓଡ଼ିଶାରେ ମହାଯାନ ବୌଦ୍ଧଧର୍ମର ପ୍ରଥମ ଆବିର୍ଭାବ ଘଟିଥିଲା ।

ଆଚାର୍ଯ୍ୟ ନାଗାର୍ଜ୍ଜୁନଙ୍କ ସମୟରେ ମାଧ୍ୟମିକ ଦର୍ଶନ ବିଶେଷ ଭାବରେ ପ୍ରସାର ଲାଭ କରିଥିଲା । ସେହି ସମୟରେ ଓଡ଼ିବିଶରେ ମୁଞ୍ଜ ନାମକ ଜଣେ ରାଜାଥିଲେ । ଆଚାର୍ଯ୍ୟ ନାଗାର୍ଜ୍ଜୁନ ଓଡ଼ିବିଶ, ଭଙ୍ଗଳ, ରାଢ଼ ଆଦି ରାଜ୍ୟରେ ବୌଦ୍ଧ ମନ୍ଦିର ମାନ ନିର୍ମାଣ କରିଥିଲେ ।

ରାଜା ବୁଦ୍ଧପକ୍ଷଙ୍କ ସମୟରେ ଓଡ଼ିବିଶର ରତ୍ନଗିରି ସମ୍ବନ୍ଧରେ ଏକ ଗୁରୁତ୍ୱପୂର୍ଣ୍ଣ ତଥ୍ୟମିଳେ । କୁହାଯାଇଛି "ସମୁଦ୍ର କୂଳରେ, ଓଡ଼ିବିଶର ପୂର୍ବଦିଗରେ ଏକ ପାହାଡ଼ ଉପରେ ରାଜା ବୁଦ୍ଧପକ୍ଷ ତାଙ୍କ ଜୀବନର ଶେଷ ଭାଗରେ ରତ୍ନଗିରି ନାମକ ଏକ ମନ୍ଦିର ନିର୍ମାଣ କରିଥିଲେ । ମହାଯାନ ଓ ହୀନଯାନ ଧର୍ମର ତିନୋଟି ଗ୍ରନ୍ଥର ନକଲ କରାଇ ସେହି ମନ୍ଦିରରେ ରଖିଥିଲେ । ସେଠାରେ ସେ ବୌଦ୍ଧଧର୍ମର ଆଠଟି ବଡ଼ କେନ୍ଦ୍ର ସ୍ଥାପନ କରିଥିଲେ ଏବଂ ପାଞ୍ଚଶହ ବୌଦ୍ଧ ସନ୍ନ୍ୟାସୀ ରହିବାର ବନ୍ଦୋବସ୍ତ କରିଥିଲେ ।" ବୁଦ୍ଧପକ୍ଷଙ୍କୁ ଐତିହାସିକମାନେ ଗୁପ୍ତରାଜା ନରସିଂହ ଗୁପ୍ତ, ବାଲାଦିତ୍ୟ ବୋଲି ନିର୍ଦ୍ଧାରଣ କରିଛନ୍ତି । ବିଶିଷ୍ଟ ପ୍ରତ୍ନତତ୍ତ୍ୱବିତ୍ ଦେବଳା ମିତ୍ର ଯାଜପୁର ଜିଲ୍ଲାରେ ଥିବା ରତ୍ନଗିରିର ପ୍ରତ୍ନତାତ୍ତ୍ୱିକ ଖନନ କରି ସେଠାରେ ବୌଦ୍ଧ ବିହାର, ସ୍ତୂପ, ବୌଦ୍ଧମୂର୍ତ୍ତି ଆଦି ଲୋକ ଲୋଚନକୁ ଆଣିଛନ୍ତି । ସେଠାରୁ ପ୍ରାପ୍ତ ଶିଳରୁ ବୌଦ୍ଧ ବିହାରର ନାମ "ରତ୍ନଗିରି ମହାବିହାର" ବୋଲି ଜଣାପଡ଼େ ଓ ଏହି ବୌଦ୍ଧ ବିହାରର ଆଦ୍ୟ ଉନ୍ମେଷ କାଳ ଗୁପ୍ତଯୁଗ ବୋଲି ଅଭିଲେଖରୁ ପ୍ରମାଣିତ ହୋଇଛି । ରତ୍ନଗିରି ଏକ ପ୍ରଖ୍ୟାତ ବୌଦ୍ଧ ବିହାର ଥିଲା ଏବଂ ରତ୍ନଗିରି ଅନୁକରଣରେ ବୁଦ୍ଧପକ୍ଷଙ୍କର ମନ୍ତ୍ରୀ (ଉଙ୍ଗଳ) ବଙ୍ଗଦେଶର ସମୁଦ୍ର କୂଳରେ ଥିବା ଗୋଟିଏ ପାହାଡ଼ ଉପରେ "ଦେବଗିରି" ନାମକ ଏକ ବିହାର ନିର୍ମାଣ କରିଥିଲେ । ରାଜା ବୁଦ୍ଧପକ୍ଷଙ୍କ ସମୟରେ ଓଡ଼ିବିଶର କଟକରେ ବୃହସ୍ପତି ନାମକ ଜଣେ ବ୍ରାହ୍ମଣ ଅନେକ ବୌଦ୍ଧ ମନ୍ଦିର ନିର୍ମାଣ କରିଥିବା କୁହାଯାଇଛି ।

ଆଚାର୍ଯ୍ୟ ଦିଗ୍‌ନାଗଙ୍କ ସମୟରେ ଓଡ଼ିବିଶରେ ରାଜା ନାଗେଶ ଓ ତାଙ୍କର ବ୍ରାହ୍ମଣ ମନ୍ତ୍ରୀ ନାଗକେଶ ବାସ କରୁଥିଲେ । ଆଚାର୍ଯ୍ୟ ଲୋୟିପା ତାଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ

କରିଥିଲେ । ସିଦ୍ଧି ପ୍ରାପ୍ତିପରେ ରାଜାଙ୍କ ନାମ ହେଲା ''ଦାରିକପା'' ଓ ମନ୍ତ୍ରୀଙ୍କ ନାମ ହେଲା ''ଡିଙ୍ଗିପା'' ।

ତାରାନାଥ ବୌଦ୍ଧଧର୍ମରେ ବିଶ୍ୱାସ କରୁଥିବା ଭଦ୍ର ପାଲିତ ନାମକ ଓଡ଼ିବିଶର ଅନ୍ୟ ଜଣେ ବ୍ରାହ୍ମଣଙ୍କ ନାମ ଉଲ୍ଲେଖ କରିଛନ୍ତି । ଆଚାର୍ଯ୍ୟ ଦିଗ୍‌ନାଗ ଓଡ଼ିବିଶର ଗୋଟିଏ ଜଙ୍ଗଲରେ ଏକ ନିର୍ଜନ ସ୍ଥାନରେ ''ଭୋଟଶେକ'' ବା ''ଭୋର ଶୈଳ'' ନାମକ ପାହାଡ଼ରେ ଏକ ଗୁମ୍ଫାରେ ଧ୍ୟାନରେ ବସି ସମାଧି ଲାଭ କରିଥିଲେ । ଡକ୍ଟର ନବୀନ କୁମାର ସାହୁଙ୍କ ମତରେ ପୁରୀଜିଲ୍ଲାର ଡେଲାଙ୍ଗ ଦିଗ୍‌ନାଗଙ୍କ ନାମ ଅନୁସାରେ ହୋଇଛି ଏବଂ ତାର ନିକଟବର୍ତ୍ତୀ କୌଣସି ଏକ ପାହାଡ଼କୁ ଭୋରଶୈଳ ବୋଲି କୁହାଯାଉଥିଲା ।

ଭଦ୍ରପାଲିତ ଦିଗ୍‌ନାଗଙ୍କ ସମ୍ପର୍କରେ ଆସି ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ସେ ଓଡ଼ିବିଶ ରାଜାଙ୍କ ମନ୍ତ୍ରୀ ହେଲେ ଓ ୧୬ଟି ବଡ଼ ବୌଦ୍ଧ ବିହାର ନିର୍ମାଣ କରିଥିଲେ । ସେ ମଧ୍ୟ ଓଡ଼ିଶାର ଏକ ନିର୍ଜନ ଜଙ୍ଗଲରେ ଶରୀର ତ୍ୟାଗ କରିଥିଲେ । ସେନ ରାଜବଂଶ ସମୟରେ ମହାପଣ୍ଡିତ ଶାକ୍ୟଶ୍ରୀ ତର୍କ ଶାସ୍ତ୍ରରେ ଜଣେ ମହାନ ବିଦ୍ୱାନ ଥିଲେ । ''ଓ ଦନ୍ତପୁରୀ'' ଓ ''ବିକ୍ରମ ଶିଳାବିହାର'' ମୁସଲମାନ ଆକ୍ରମଣର ଶିକାର ହେଲାପରେ ପଣ୍ଡିତ ଶାକ୍ୟ ଶ୍ରୀ ଓଡ଼ିଶାର ଜଗଦଳ ବୌଦ୍ଧ ବିହାରକୁ ଆସିଥିଲେ । ସେଠାରେ ସେ ତିନିବର୍ଷ ଅତିବାହିତ କରିବା ପରେ ତିବ୍ବତକୁ ଯାଇଥିଲେ । ତାରାନାଥଙ୍କ ବିବରଣୀରୁ ଜଣାପଡ଼େ ବୌଦ୍ଧଧର୍ମର ପଣ୍ଡିତ ଶାନ୍ତି ଦେବ, କଳିଙ୍ଗ ନଗରରେ ବାସ କରୁଥିଲେ । ବିଶିଷ୍ଟ ବୌଦ୍ଧ ଦାର୍ଶନିକ ଧର୍ମକୀର୍ତ୍ତି କଳିଙ୍ଗରେ ଗୋଟିଏ ମନ୍ଦିର ନିର୍ମାଣ କରିଥିଲେ ଓ ଅନେକ ଲୋକଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରିବା ପରେ ଦେହତ୍ୟାଗ କରିଥିଲେ । ତାଙ୍କର ଶରୀରକୁ ଅଗ୍ନିରେ ଦାହ କଲାବେଳେ ପୁଷ୍ପବୃଷ୍ଟି ହୋଇଥିଲା । ଦକ୍ଷିଣ ଓଡ଼ିଶାର ଗୁଣପୁର ନିକଟସ୍ଥ ଜଗମୁଣ୍ଡା ପାହାଡ଼ ଉପରେ ଗୋଟିଏ ପ୍ରାଚୀନ ମନ୍ଦିର ଅଛି । ସେଥିରେ ଥିବା ଉତ୍‌କୀର୍ଣ୍ଣ ଅଭିଲେଖରେ ''ଧର୍ମକୀର୍ତ୍ତି''ଙ୍କ ନାମ ଉଲ୍ଲେଖ କରାଯାଇଛି ।

ତୁରସ୍କମାନଙ୍କ ମଗଧ ଆକ୍ରମଣ ପରେ ମଧ୍ୟ କଳିଙ୍ଗରେ କେତେକ ବୌଦ୍ଧ କେନ୍ଦ୍ର ସ୍ଥାପିତ ହୋଇ ବୌଦ୍ଧ ପରମ୍ପରା ଏବଂ ସାଧନା ଅତୁଟ ରହିଥିଲା । କଳିଙ୍ଗରେ ନରସୂର୍ଯ୍ୟ ନାମକ ଜଣେ ପ୍ରଖ୍ୟାତ ପଣ୍ଡିତ ଥିଲେ । ସେହିପରି କଳିଙ୍ଗରେ ଜନ୍ମଗ୍ରହଣ କରିଥିବା ବଳମିତ୍ର ନାମକ ଜଣେ ବ୍ରାହ୍ମଣ ବୌଦ୍ଧଧର୍ମର ବଡ଼ ପୃଷ୍ଠପୋଷକ ଥିଲେ । ସେ ଅନେକ ଚୈତ୍ୟନିର୍ମାଣ କରିଥିଲେ । ଓଡ଼ିଶାରେ ବ୍ରାହ୍ମଣ ମାନଙ୍କ ବ୍ୟତୀତ ଅନ୍ୟ ଜାତିର ଲୋକ ମଧ୍ୟ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ । ବୋଧିଭଦ୍ର ଓଡ଼ିଶାରେ ଏକ ବୈଶ୍ୟ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ବୋଧିସତ୍ତ୍ୱ ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଓଡ଼ିଶାର ରାଜା ବୀରାଚାର୍ଯ୍ୟ ବଙ୍ଗ ରାଜାଙ୍କର ଜଣେ ବନ୍ଧୁଥିଲେ ଓ ତାଙ୍କୁ

ଓଡ଼ିଶାର ଏକ ବୌଦ୍ଧ ବିହାରକୁ ନିମନ୍ତ୍ରଣ କରିଥିଲେ । ସେହି ବିହାରରେ ଆଗରୁ ଓଡ଼ିଶାର ରାଜା ମୁଞ୍ଜ ବାସ କରୁଥିଲେ ।

ତାରାନାଥ ପଦ୍ମବଜ୍ର ଓ କମ୍ବଳପାଙ୍କୁ ତନ୍ତ୍ରଯାନର ମୁଖ୍ୟପ୍ରବକ୍ତା ବୋଲି ମାନନ୍ତି । ଚୌରାଶି ସିଦ୍ଧ ଆଚାର୍ଯ୍ୟଙ୍କ ବିବରଣୀରେ କମ୍ବଳପାଙ୍କୁ ଓଡ଼ିଶାର ସିଦ୍ଧ ବଜ୍ର ଘଣ୍ଟାଙ୍କର ଶିଷ୍ୟ ବୋଲି କୁହାଯାଇଛି ଓ ସେ ସିଦ୍ଧ ରାଜା ଇନ୍ଦ୍ରଭୂତିଙ୍କର ଗୁରୁଥିଲେ । ତାରାନାଥଙ୍କ ବିବରଣୀରୁ ଜଣାଯାଏ ଯେ ବୌଦ୍ଧଧର୍ମ ଓଡ଼ିଶାକୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ଓଡ଼ିଶା ତଥା ପ୍ରାଚୀନ କଳିଙ୍ଗରେ ଅନେକ ବୌଦ୍ଧ ବିହାର ଓ କେନ୍ଦ୍ରମାନ ବିକାଶ ଲାଭ କରିଥିଲା ।

ମୁକୁନ୍ଦ ଦେବ (୧୫୬୦-୧୫୬୮) ଓଡ଼ିଶାର ଶେଷ ସ୍ୱାଧୀନ ରାଜା ଥିଲେ । ତାରାନାଥ କୁହନ୍ତି ''ମୁକୁନ୍ଦ ଦେବ ସେ ସମୟର ଅଧିକାଂଶ ରାଜ୍ୟ ଜୟ କରିଥିଲେ । ସେ ଓଡ଼ିଶାରେ ସ୍ଥାନୀୟ ଲୋକଙ୍କ ପାଇଁ ମନ୍ଦିର ନିର୍ମାଣ କରିଥିଲେ ଓ ବୌଦ୍ଧ ଧର୍ମାବଲମ୍ବୀଙ୍କ ପାଇଁ କେତେକ ଛୋଟ ଛୋଟ କେନ୍ଦ୍ରସ୍ଥାପନ କରିଥିଲେ । ତାଙ୍କର ପ୍ରଚେଷ୍ଟାରେ ବୌଦ୍ଧଧର୍ମର ଅଭିବୃଦ୍ଧି ଘଟିଥିଲା ।'' ତାରାନାଥଙ୍କର ଏହି ଉକ୍ତିରୁ ଜଣାପଡ଼େ ଓଡ଼ିଶାରେ ବୌଦ୍ଧଧର୍ମ ୧୫୬୮ ପର୍ଯ୍ୟନ୍ତ ତିଷ୍ଠି ରହିଥିଲା । ଷୋଡଶ ଶତାବ୍ଦୀ ବେଳକୁ ଭାରତବର୍ଷର ଅନ୍ୟ ଅଞ୍ଚଳରେ ବୌଦ୍ଧଧର୍ମ ପ୍ରାୟତଃ ଲୋପ ପାଇଯାଇଥିଲା । ତାରାନାଥ ୧୬୦୮ରେ ତାଙ୍କର ଗ୍ରନ୍ଥ ଲେଖିଥିବାରୁ ତାଙ୍କର ଏହି ତଥ୍ୟ ସତ୍ୟ ଓ ବିଶ୍ୱାସ ଯୋଗ୍ୟ ବୋଲି ମନେ ହୁଏ । ତାରାନାଥଙ୍କ ବିବରଣୀରୁ ଓଡ଼ିଶାରେ ହୀନଯାନ, ମହାଯାନ ଓ ପରବର୍ତ୍ତୀ କାଳର ତନ୍ତ୍ରଯାନ କ୍ଷେତ୍ରରେ ଓଡ଼ିଶାର ଅବଦାନ ସଂପର୍କରେ ସମ୍ୟକ ଧାରଣା କରିହୁଏ ।

ପୂର୍ବତନ ମୁଖ୍ୟ ଅଧ୍ୟାପକ
ଇତିହାସ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

ସହାୟକ ଗ୍ରନ୍ଥ ସୂଚୀ

Debi Prasad Chattopadhyaya Ed. Taranatha's History of Buddhism in India, 2nd Ed., Calcutta
Debala Mitra, Ratnagiri 2vols, New Delhi, 1981
K.C. Panigrahi, History of Orissa, Cuttack 1984
N.K. Sahu, Buddhism in Orissa, Utkal University, 1958.

(ଲେଖକ ଫକୀରମୋହନ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି
ଏବଂ ଜଣେ ବିଶିଷ୍ଟ ଐତିହାସିକ)

# ଭାଗ୍ୟର ବିଡ଼ମ୍ବନା ତିବ୍ବତ

ଡକ୍ଟର ବିମଳେନ୍ଦୁ ମହାନ୍ତି

ତିବ୍ବତର ଇତିହାସ ବହୁ ପ୍ରାଚୀନ । ପୁରାତନ ପ୍ରସ୍ତର ଯୁଗର ଇତିହାସ ସହ ତିବ୍ବତର ଇତିହାସ ଜଡ଼ିତ । ପ୍ରତ୍ନତାତ୍ତ୍ୱିକ ଖନନରୁ ଜଣାଯାଇଛି ଯେ ପ୍ରାୟ ପାଞ୍ଚହଜାର ବର୍ଷ ପୂର୍ବେ ତିବ୍ବତର ଇତିହାସ ବିକଶିତ ହୋଇଥିଲା । ସଭ୍ୟତା ସଂପନ୍ନ ତିବ୍ବତର ରାଜନୈତିକ ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଏ, ଏହିଦେଶ କ୍ରମାନ୍ୱୟରେ ବହୁ ରାଜାଙ୍କ ଦ୍ୱାରା ଶାସିତ ହୋଇଛି । ତିବ୍ବତର ପ୍ରଥମ ଶାସକ ଥିଲେ ନ୍ୟାତ୍ରୀ ସାମ୍ପୋ । ତିବ୍ବତର ବତିଶତମ ଶାସକ ସଙ୍ଗ୍‌ଚେନ୍ ଗାମ୍ପୋ ଜଣେ ଦୁର୍ଦ୍ଧର୍ଷ ବୀର, ଦକ୍ଷ ଶାସକ ଏବଂ ସଂସ୍କାରକ ଭାବେ ଖ୍ୟାତି ଅର୍ଜନ କରିଥିଲେ । ଖ୍ରୀଷ୍ଟାବ୍ଦ ୬୨୯ରୁ ୬୫୦ ପର୍ଯ୍ୟନ୍ତ ତିବ୍ବତକୁ ଶାସନ କରିଥିବା ସଙ୍ଗ୍‌ଚେନ୍ ତାଙ୍କ ଶାସନକାଳରେ ଜିଲ୍ଲା ପ୍ରଶାସନିକ ସଂସ୍କାର କରିବା ସହ ତାଙ୍କୁ ସହାୟତା କରିବା ପାଇଁ ନଅଜଣ ମନ୍ତ୍ରୀଙ୍କୁ ନିଯୁକ୍ତ କରିଥିଲେ । ବୌଦ୍ଧଧର୍ମକୁ ତିବ୍ବତର ଏକ ପ୍ରମୁଖ ଧର୍ମର ମାନ୍ୟତା ଦେବାରେ ମଧ୍ୟ ତାଙ୍କର ଅବଦାନ ଅବିସ୍ମରଣୀୟ । ତାଙ୍କ ସମୟରେ ରାଜନୈତିକ, ସାଂସ୍କୃତିକ ଓ ଅର୍ଥନୈତିକ କ୍ଷେତ୍ରରେ ତିବ୍ବତର ବହୁବିଧ ଉନ୍ନତି ହୋଇଥିବାରୁ ତାଙ୍କ ଶାସନକାଳକୁ 'ସୁବର୍ଣ୍ଣ ଯୁଗ' ଭାବେ ଅଭିହିତ କରାଯାଏ । ଖ୍ରୀଷ୍ଟାବ୍ଦ ୬୭୬ରେ ତିବ୍ବତୀୟ ସେନାବାହିନୀ, ଚୀନ୍ ସେନାକୁ ପରାସ୍ତ କରିଥିଲେ ସୁଦ୍ଧା ତିବ୍ବତର ଶାସକମାନଙ୍କ ପକ୍ଷରୁ ଉଭୟ ଦେଶମଧ୍ୟରେ ଦ୍ୱିପାକ୍ଷିକ ସଂପର୍କ ବୃଦ୍ଧି ନେଇ ବହୁ ପଦକ୍ଷେପ ନିଆଯାଇଥିବାର ପ୍ରମାଣ ମିଳିଥାଏ । ଉଦାହରଣ ସ୍ୱରୂପ, ତିବ୍ବତର ଶାସକ ସଗ୍‌ସେନ୍, ଚୀନ୍‌ର ରାଜକୁମାରୀଙ୍କୁ ୭୧୦ ଖ୍ରୀଷ୍ଟାବ୍ଦରେ ବିବାହ କରିଥିଲେ । ଉଭୟ ଦେଶ ମଧ୍ୟରେ ଶାନ୍ତି ଓ ବନ୍ଧୁତା ପାଇଁ ଖ୍ରୀଷ୍ଟାବ୍ଦ ୭୮୩ରେ ଐତିହାସିକ 'ଚି-ଇଙ୍ଗ୍ ସୁଇ' ଶାନ୍ତିଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ତେବେ ତିବ୍ବତର ରାଜନୈତିକ ଇତିହାସରେ ନବମ, ଦଶମ ଓ ଏକାଦଶ ଶତାବ୍ଦୀ ଅନ୍ୟ ଶତାବ୍ଦୀ ତୁଳନାରେ କାଳିମାମୟ । ଏହି ତିନି ଶତାବ୍ଦୀ ଧରି ତିବ୍ବତରେ ଶାନ୍ତି ପରିବର୍ତ୍ତେ ଅଶାନ୍ତି ଏବଂ ଧର୍ମ ପରିବର୍ତ୍ତେ ଅଧର୍ମର ରାଜୁତି ଚାଲିଥିଲା । ସେହିପରି ଛୋଟ ଛୋଟ ଅଞ୍ଚଳର ଶାସକମାନେ ନିଜ ନିଜ କ୍ଷମତାକୁ ଜାହିର କରିବା ପାଇଁ ପରସ୍ପର ମଧ୍ୟରେ ସଂଘର୍ଷରେ ସମୟ କାଟୁଥିଲେ । ବ୍ୟାପକ ଅରାଜକତା ମଧ୍ୟରେ ତିବ୍ବତବାସୀ କାଳାତିପାତ କରିଥିଲେ । ଖ୍ରୀଷ୍ଟାବ୍ଦ ୧୨୦୯ରେ ଇତିହାସ ପ୍ରସିଦ୍ଧ ଆକ୍ରମଣକାରୀ ମଙ୍ଗୋଲିଆର ଚେଙ୍ଗିଜ୍ ଖାଁ ତିବ୍ବତକୁ ଆକ୍ରମଣ କରି ଅଧିକାର କରିଥିବା ବେଳେ ଖ୍ରୀଷ୍ଟାବ୍ଦ ୧୨୪୦ରେ ତାଙ୍କ

ନାତି ଗଦନ୍ ତିବ୍ବତର ଅଧିକାଂଶ ଅଞ୍ଚଳକୁ ନିଜ ଅଧିନସ୍ଥ କରିବାରେ ସକ୍ଷମ ହୋଇଥିଲେ । ତେବେ ପରବର୍ତ୍ତୀ କାଳରେ ଜଣେ ବଜ୍ରଯାନବାଦୀ ବୌଦ୍ଧଗୁରୁ ପାଂଗପାଙ୍କ ସଂସ୍ପର୍ଶରେ ଆସି ଗଦନ ଏବଂ ତାଙ୍କ ଉତ୍ତରାଧିକାରୀ କୁବଲାଇ ତିବ୍ବତରେ ବଜ୍ରଯାନବାଦ ସର୍ବସ୍ୱ ବୌଦ୍ଧଧର୍ମର ପ୍ରଚାର ପ୍ରସାରରେ ପୃଷ୍ଠପୋଷକତା କରିଥିଲେ । ସେ ଗୁରୁ ଦକ୍ଷିଣା ସ୍ୱରୂପ କେନ୍ଦ୍ରୀୟ ତିବ୍ବତର ତେରଟି ପ୍ରମୁଖ ଅଞ୍ଚଳ ପ୍ରଦାନ କରି ପାଂଗପାଙ୍କୁ 'ମୁଖ୍ୟଗୁରୁ'ର ମାନ୍ୟତା ଦେଇଥିଲେ । ଏହି ସମୟରୁ ତିବ୍ବତ ଓ ମଙ୍ଗୋଲିଆ ମଧ୍ୟରେ ଗୁରୁ ଓ ପୃଷ୍ଠପୋଷକ ସଂପର୍କର ସୂତ୍ରପାତ ହୋଇଥିଲା । ପରବର୍ତ୍ତୀ କାଳରେ ମୁଖ୍ୟଗୁରୁ ପାଂଗ୍‌ପା, 'ସଂପୂର୍ଣ୍ଣ ତିବ୍ବତ'କୁ ଗୁରୁଦକ୍ଷିଣା ଭାବେ ଅକ୍ତିଆର କରିବାରେ ସକ୍ଷମ ହୋଇଥିଲେ । ଖ୍ରୀଷ୍ଟାବ୍ଦ ୧୨୬୫ରେ ଗୁରୁ ପାଂଗ୍‌ପା ଗନ୍ ଚୋଗ୍ୟାଲ୍ ପାଂଗ୍‌ପା ବା ଧର୍ମରାଜ ଭାବେ ପରିଚିତି ପାଇଥିଲେ । ସେ ଶାକ୍ୟ ସାମ୍ରାଜ୍ୟ ପ୍ରତିଷ୍ଠା କରି ଜଣେ ଧର୍ମୀୟ ମୁଖ୍ୟ ମଧ୍ୟ ସୁଶାସକ ହୋଇପାରେ ବୋଲି ପ୍ରମାଣ ଦେଇଥିଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ତିବ୍ବତୀୟ ଲାମା (ଗୁରୁ)ଗଣ ଚୀନ୍ ଶାସକବର୍ଗର ଶିକ୍ଷକ ହେବାର ସୁଯୋଗ ପାଇଥିଲେ । ଖ୍ରୀଷ୍ଟାବ୍ଦ ୧୩୯୧ରେ ଲାମା ସନମ୍ ଗ୍ୟାତ୍ସୋଙ୍କୁ 'ଦଲାଇ' ଉପାଧି ପ୍ରଦାନ କରାଯାଇ ସେହି ମହାନ୍ ପରଂପରାର ଶୁଭାରମ୍ଭ କରାଯାଇଥିଲା । ନିଜ ଜୀବନକାଳରେ ବୁଦ୍ଧତ୍ୱ ଲଭିଥିବା ସମସ୍ତ ଦଲାଇଲାମା ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର ସହ ବିଭିନ୍ନ ଦେଶରେ ବୌଦ୍ଧଧର୍ମର ବିକାଶ, ବୌଦ୍ଧବିହାର ଗଠନ ସର୍ବୋପରି ତିବ୍ବତର ପ୍ରଶାସନିକ ପ୍ରଗତିରେ ସହାୟକ ହୋଇଛନ୍ତି । ତିବ୍ବତ ଉପରେ ନେପାଳର ଗୋର୍ଖାଗଣ ୧୭୬୯ ଓ ୧୭୯୨ ଖ୍ରୀଷ୍ଟାବ୍ଦରେ କରିଥିବା ଅମାନୁଷିକ ଆକ୍ରମଣ ଇତିହାସର ଏକ କଳଙ୍କିତ ଅଧ୍ୟାୟ । ଏହି ଆକ୍ରମଣ ଘଟଣାରେ ଚୀନ୍ ଦୋମୁହାଁ ନୀତି ଅବଲମ୍ବନ କରି ପ୍ରଥମ ଥର ପାଇଁ ତିବ୍ବତର ବନ୍ଧୁତ୍ୱପୂର୍ଣ୍ଣ ଆବେଦନ ବଦଳରେ ଛୁରୀକାଘାତ କରିଥିଲା । ସାହାଯ୍ୟ ଆଳରେ ଚୀନ୍, ତିବ୍ବତ ପାଇଁ 'ପ୍ରଶାସନିକ ନିର୍ଦ୍ଦେଶାବଳୀ' ଦଲିଲ୍ ତିଆରି କରି ତିବ୍ବତ ନିଜ ସୁରକ୍ଷା ପାଇଁ ଏହା ମାନିବା ଜରୁରୀ ବୋଲି ଜଣାଇ ଦେଇଥିଲା । ତେବେ ତିବ୍ବତୀୟମାନେ ଏହି ଦଲିଲ୍‌କୁ ମାନିବାକୁ ରାଜି ହୋଇନଥିଲେ । ଉନବିଂଶ ଶତାବ୍ଦୀରେ ତିବ୍ବତକୁ ବିଦେଶୀମାନଙ୍କ ପ୍ରବେଶକୁ ନିଷେଧ କରାଯାଇ ଏହାର ସ୍ୱାଧୀନତା ଓ ସାର୍ବଭୌମତା ଉପରେ ହସ୍ତକ୍ଷେପ କରାଯାଇଥିଲା । ତେବେ ତ୍ରୟୋଦଶ ଦଲାଇଲାମାଙ୍କ ନେତୃତ୍ୱରେ ଲାସାଠାରେ ତିବ୍ବତର ରାଜଧାନୀ କରାଯାଇ ରାଜନୈତିକ କାର୍ଯ୍ୟକ୍ରମ କରାଯିବାରୁ ଚୀନ୍ କର୍ତ୍ତୃପକ୍ଷ ତିବ୍ବତର ସ୍ୱାୟତ୍ତତାକୁ ସ୍ୱୀକୃତି ପ୍ରଦାନ କରିଥିଲେ । ୧୯୩୩ ମସିହାରେ ତ୍ରୟୋଦଶ ଦଲାଇଲାମାଙ୍କ ମୃତ୍ୟୁ ପରେ ତିବ୍ବତ ପୁନଶ୍ଚ ସ୍ୱାଧିନତା ହରାଇଥିଲା । ୧୯୪୦ ମସିହାରୁ ୧୯୪୬ ମସିହା ପର୍ଯ୍ୟନ୍ତ ଚୀନ୍, ତିବ୍ବତକୁ ସମସ୍ତ ଆନ୍ତର୍ଜାତିକ ଚାପ ସତ୍ତ୍ୱେ ସ୍ୱାଧିନତାରୁ ବଞ୍ଚିତ କରିଥିଲା । ୧୯୪୦ ମସିହାରେ ଚତୁର୍ଦ୍ଦଶ ଦଲାଇଲାମା ହୋଇଥିବା ତେନ୍‌ଜିନ୍ ଗ୍ୟାସୋ ଏଯାବତ୍ ତିବ୍ବତର ସର୍ବୋଚ୍ଚ ଶାସନ ମୁଖ୍ୟର ଦାୟିତ୍ୱ ନିର୍ବାହ କରୁଛନ୍ତି ।

୧୯୪୭ ମସିହାରେ ତିବ୍ବତୀୟ ପ୍ରତିନିଧିଦଳ ନୂଆଦିଲ୍ଲୀରେ ଅନୁଷ୍ଠିତ ଏସୀୟ ସଂପର୍କ ସମ୍ମିଳନୀରେ ଅଂଶ ଗ୍ରହଣ କରିଥିଲେ, ଏଥିରେ ତିବ୍ବତର ଜାତୀୟ ପତାକା ଉତ୍ତୋଳିତ ହୋଇଥିଲା । ୧୯୪୮ ମସିହାରେ ଭାରତ, ତିବ୍ବତକୁ ସ୍ୱାଧୀନ, ସାର୍ବଭୌମ, ସ୍ୱୟଂଶାସିତ ରାଷ୍ଟ୍ରର ମାନ୍ୟତା ଦେଇଥିଲା । ୧୯୫୦ ମସିହାରେ ଚୀନ ତିବ୍ବତ ଉପରେ ଆକ୍ରମଣ କରି ବହୁ ତିବ୍ବତୀୟଙ୍କୁ ବନ୍ଦୀକରିଥିଲା । ସେତିକି ବେଳକୁ ଭାରତ ସବୁ ବୁଝାମଣା ସତ୍ତ୍ୱେ ତିବ୍ବତ ଉପରେ ଚୀନର ସାର୍ବଭୌମତ୍ୱ ମାନିନେଲା । ଏଥିରେ ମର୍ମାହତ ହୋଇ ଦଲାଇଲାମା ଶାନ୍ତି ଓ ବନ୍ଧୁତା ପାଇଁ ଚୀନ୍ କର୍ତ୍ତୃପକ୍ଷଙ୍କୁ ନିବେଦନ କରିଥିଲେ । ଏହି ନିବେଦନରେ ତିବ୍ବତୀୟଙ୍କୁ ସ୍ୱୟଂଶାସନ କ୍ଷମତା ହସ୍ତାନ୍ତର, ବଳପୂର୍ବକ ଦଖଲ କରିନେଇଥିବା ତିବ୍ବତୀୟ ଅଞ୍ଚଳ ଫେରସ୍ତ ଅନ୍ତର୍ଭୁକ୍ତ ଥିଲା । ଏହି ମର୍ମରେ ଗାପୋ ପ୍ରତିନିଧିଦଳ ତିବ୍ବତରୁ ଚୀନ୍ ଗସ୍ତରେ ଯାଇଥିଲେ ଏବଂ ଚୀନ୍ କର୍ତ୍ତୃପକ୍ଷଙ୍କ ବାଧ୍ୟବାଧକତାରେ ଅନିଚ୍ଛା ସତ୍ତ୍ୱେ ସତର ସୂତୀ ସମ୍ବଳିତ ରାଜିନାମାରେ ସ୍ୱାକ୍ଷର କରିଥିଲେ । ଏହି ରାଜିନାମା ପରେ ମହାମହିମ ଦଲାଇଲାମା ଅନୋନ୍ୟପାୟ ହୋଇ ତିବ୍ବତର ମୁଖ୍ୟ କାର୍ଯ୍ୟାଳୟ ଲାସା ଛାଡ଼ି ଭାରତରେ ରାଜନୈତିକ ଆଶ୍ରୟ ନେଇଛନ୍ତି । ୧୯୫୯ ମସିହାରେ ଦଲାଇଲାମା ଭାରତର ଧର୍ମଶାଳାରେ ରାଜନୈତିକ ଆଶ୍ରୟ ନେଇ ସେଠାରେ ତିବ୍ବତର ରାଜନୈତିକ ଓ ପ୍ରଶାସନିକ କାର୍ଯ୍ୟାଳୟ ସ୍ଥାପନ କରିଛନ୍ତି । ଏହିସବୁ ଅଧ୍ୟାୟର ଅବତାରଣାରୁ ତିବ୍ବତର ଗୌରବମୟ ଇତିହାସ ବିଷୟରେ ସୂଚନା ମିଳିଥାଏ । ସାହସୀ, କର୍ମବୀର, ଚଳଚଞ୍ଚଳ, ଧର୍ମପ୍ରିୟ, ଶାନ୍ତିପ୍ରେମୀ ଭାବେ ପରିଚିତ ତିବ୍ବତୀୟ ଜନତା ସମଗ୍ର ବିଶ୍ୱରେ ସେମାନଙ୍କ ଜୀବନଧାରା, ଆଭିମୁଖ୍ୟ ପାଇଁ ପରିଚିତ ଓ ପ୍ରଶଂସିତ । ହଂକଂ, ତାଇୱାନ୍, ଭିଏତ୍‌ନାମ ଭଳି ଏକ ପୃଥକ ସ୍ୱାଧୀନରାଷ୍ଟ୍ରର ମାନ୍ୟତା ପାଇବାକୁ ଆନ୍ଦୋଳନରତ ତିବ୍ବତରେ ଚୀନ୍ କର୍ତ୍ତୃପକ୍ଷଙ୍କ ମାନବାଧିକାର ଉଲଂଘନ ତଥା ତିବ୍ବତୀୟଙ୍କ ସ୍ୱାଧିନତାରେ ଅଯଥା ହସ୍ତକ୍ଷେପ ବିଷୟରେ ଜାଗରଣ ଆରମ୍ଭ ହୋଇଛି । ତିବ୍ବତକୁ ତା'ର ସ୍ୱାଧିନତା ଓ ସ୍ୱାୟତ୍ତତା ଫେରାଇବାରେ ଭାରତର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଭାରତ ଓ ତିବ୍ବତ ମଧ୍ୟରେ କେବଳ ଯେ ଭୌଗୋଳିକ ସଂପର୍କ ରହିଛି ତା' ନୁହେଁ ବରଂ ରାଜନୈତିକ, ସାମାଜିକ, ସାଂସ୍କୃତିକ, କୂଟନୈତିକ ସଂପର୍କ ଦୃଷ୍ଟିରୁ ମଧ୍ୟ ଉଭୟଙ୍କ ବନ୍ଧୁତା ସମୟର କଷଟି ପଥରରେ ପରୀକ୍ଷା ହୋଇଛି । ତେଣୁ ତିବ୍ବତର ସାର୍ବଭୌମତା ଓ ସ୍ୱାଧିନତାକୁ ଅକ୍ଷୁଣ୍ଣ ରଖିବା ପାଇଁ ଭାରତୀୟମାନେ ସମ୍ମିଳିତ ଭାବେ ସଭାସମିତି, ପ୍ରଚାର ପ୍ରସାର ସର୍ବୋପରି ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନେବାର ସମୟ ଆଜି ଉପନୀତ ।

ଏନ୍ ୩/୩୧୪, ଆଇ.ଆର.ସି. ଭିଲେଜ
ନୟାପଲ୍ଲୀ, ଭୁବନେଶ୍ୱର-୭୫୧୦୧୫

(ଲେଖକ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା କୁଳପତି । ଇଣ୍ଡୋ-ତିବ୍ବତ ମୈତ୍ରୀ ସଂଘ, ଓଡ଼ିଶା ଶାଖାର ସେ କାର୍ଯ୍ୟକାରୀ ସଭାପତି ।)

# ଭାରତ-ତିବ୍ବତ ସମ୍ପର୍କ ଓ ବୌଦ୍ଧ ଧର୍ମ

ପ୍ରଫେସର ଚନ୍ଦ୍ରା ପଟ୍ଟନାୟକ

ଭାରତ ଓ ତିବ୍ବତ ଭୌଗୋଳିକ ସୂତ୍ରରେ ଦୁଇ ପ୍ରତିବେଶୀ ରାଜ୍ୟ ଭାବରେ ବନ୍ଧା ହୋଇଛି ସତ, କିନ୍ତୁ ଏଇ ଦୁଇ ଦେଶର ସମ୍ପର୍କ ଏହି ଭୌଗୋଳିକ ଆକସ୍ମିକତା ଠାରୁ ଆହୁରି ବେଶୀ ନିବିଡ଼ ଓ ଗଭୀର । ଏ ସମ୍ପର୍କ ଅନ୍ତରର ତଥା ଭାବର । ଏହା ମୂଳରେ ଅଛି ଏକ ନିବିଡ଼ତର ସଂସ୍କୃତି, ଧର୍ମ ଓ ଦର୍ଶନର ଦୃଢ଼ ବନ୍ଧନ । ଭାରତ ମାଟିରେ ଜନ୍ମିଥିବା ବୌଦ୍ଧ ଧର୍ମ ଆନ୍ତରିକତାର ଯେଉଁ ସେତୁଟି ଏହି ଦୁଇ ଦେଶ ମଧ୍ୟରେ ସୃଷ୍ଟି କରିଥିଲା ତାହା ଆଜି ମଧ୍ୟ ଅତୁଟ ।

ମହାତ୍ମା ବୁଦ୍ଧ ଆମ ଦେଶରେ କରୁଣା, ମୈତ୍ରୀ ଓ ଅହିଂସାର ଯେଉଁ ନୂତନ ବାଣୀର ପ୍ରଚାର କରିଥିଲେ, ତାହାକୁ ଭାରତ ମାଟିରେ ବେଶୀ ଦିନ ଉଜ୍ଜୀବିତ କରି ରଖିବା ସମ୍ଭବ ହୋଇନଥିଲା । ବ୍ରାହ୍ମଣ୍ୟ ଧର୍ମର ପ୍ରକୋପରେ ଏହିପରି ଏକ ମାନବତାବାଦୀ ଓ ଯୁଗାନ୍ତକାରୀ ଧର୍ମକୁ ପ୍ରବାସୀ ହେବାକୁ ପଡ଼ିଥିଲା । ତେଣୁ ବୌଦ୍ଧ ଧର୍ମକୁ ପ୍ରତିପାଳିତ ଓ ପରିପୋଷଣ କରିବାର ଦାୟିତ୍ୱ ଅତି ସାଦରେ ଗ୍ରହଣ କରିଥିଲେ-ତିବ୍ବତ, ନେପାଳ, ଚୀନ ଓ ସିଂହଳ ପରି କେତେକ ପ୍ରତିବେଶୀ ରାଜ୍ୟ । ବୁଦ୍ଧଙ୍କ ତିରୋଧାନ ପରେ ବୌଦ୍ଧଧର୍ମ ନାନା ଶାଖା ପ୍ରଶାଖାରେ ବିଭକ୍ତ ହୋଇ ଆହୁରି ବୈଚିତ୍ର୍ୟମୟ ହୋଇ ଉଠିଥିଲା । ନାଗାର୍ଜୁନ, ଧର୍ମକୀର୍ତ୍ତି, ଅସଙ୍ଗ, ବସୁବନ୍ଧୁ, ଇନ୍ଦ୍ରଭୂତି ପ୍ରଭୃତି ବୌଦ୍ଧ ଆଚାର୍ଯ୍ୟମାନେ ବହୁ ନୂତନ ତଥ୍ୟ ଓ ତତ୍ତ୍ୱମାନ ମୂଳ ବୌଦ୍ଧ ଧର୍ମରେ ସଂଯୋଜିତ ଓ ସମ୍ମିଳିତ କରି ଏହାକୁ ଉତ୍କର୍ଷତାର ଉତ୍ତୁଙ୍ଗ ଶିଖରରେ ପହଞ୍ଚାଇବାରେ ସକ୍ଷମ ହୋଇଥିଲେ । ଅଷ୍ଟମ ଓ ନବମ ଶତାବ୍ଦୀପରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍‌ଥାନ ଓ ପରେ ପରେ ମୋଗଲ ଧର୍ମର ଆଧିପତ୍ୟ ଫଳରେ ବୌଦ୍ଧ ଧର୍ମର ପ୍ରଭାବ ଭାରତ ମାଟିରୁ ଅପସରି ଯାଇ ଏକ ସ୍ମୃତି ମାତ୍ର ହୋଇ ରହିଲା । ବିଂଶ ଶତାବ୍ଦୀରେ ଯେତେବେଳେ ବିଶ୍ୱବାସୀଙ୍କର ବୌଦ୍ଧ ଧର୍ମ ପ୍ରତି ଉତ୍ସାହ ଦେଖାଗଲା, ସେତେବେଳେ ଆମର ନିଦ ଭାଙ୍ଗିଲା । ବୌଦ୍ଧ ଧର୍ମ ଆମର ସମ୍ପତ୍ତି ବୋଲି ଦାବୀ କରିବାରେ ହଠାତ ଆଗ୍ରହୀ ହୋଇ ପଡ଼ିଲୁ । କିନ୍ତୁ ଭାରତରେ ବୌଦ୍ଧଧର୍ମର କ୍ରମବିକାଶର ଇତିହାସ ଜାଣିବା ପାଇଁ ସେତେବେଳେ ଆମ ପାଖରେ ନା ଅଛି କୌଣସି ତଥ୍ୟ, ନା ଅଛି କୌଣସି ଗ୍ରନ୍ଥ । ଯଦି ଏ ଗୁଡ଼ିକ ତିବ୍ବତରେ ସଂରକ୍ଷିତ ହୋଇ ନ ଥାଆନ୍ତା ତେବେ ବୌଦ୍ଧ ଧର୍ମର ଇତିହାସ

ଆଜି କାଳ ଗର୍ଭରେ ଲୀନ ହୋଇ ଯାଇଥା'ନ୍ତା । ବିଖ୍ୟାତ ତିବ୍ବତୀୟ ପଣ୍ଡିତ ବୁ ଷ୍ଟୋନ (Bu-ston) ବୌଦ୍ଧଗ୍ରନ୍ଥ ଗୁଡ଼ିକ ସୂଚୀକୃତ କରିବା ସହ, ଅଧିକାଂଶ ବୌଦ୍ଧ ଗ୍ରନ୍ଥ ଗୁଡ଼ିକୁ ତିବ୍ବତୀୟ ଭାଷାରେ ଅନୁବାଦ କରି ସାଇତି ରଖିଥିବାରୁ ହିଁ ଆମେ ଭାରତର ବିଖ୍ୟାତ ବୌଦ୍ଧ ଆଚାର୍ଯ୍ୟ ଓ ସିଦ୍ଧ ମାନଙ୍କ ବିଷୟରେ ତଥା ବୌଦ୍ଧ ଧର୍ମର ମୂଳ ସଂସ୍କୃତ କୃତି ଗୁଡ଼ିକ ବିଷୟରେ ଅବହିତ ହେବାର ସୁଯୋଗ ପାଇଛୁ । ଏ ଦୃଷ୍ଟିରୁ ବିଚାର କରିଲେ ଭାରତର ଐତିହ୍ୟର ଇତିହାସର ସୁରକ୍ଷା ପାଇଁ ଭାରତ ତିବ୍ବତ ନିକଟରେ ଚିର ଋଣୀ ରହିବା ଉଚିତ । ଏହି ପରିପ୍ରେକ୍ଷୀରେ ବୌଦ୍ଧ ଧର୍ମ ମାଧ୍ୟମରେ ଭାରତ ଓ ତିବ୍ବତ ମଧ୍ୟରେ ଯେଉଁ ସାଂସ୍କୃତିକ ବନ୍ଧନର ସୂତ୍ରପାତ ହୋଇ ତାହା ବିଷୟରେ ସଂକ୍ଷେପରେ କିଛି ଆଲୋକପାତ କରିବା ପ୍ରୟୋଜନ ।

ତିବ୍ବତୀୟ କିମ୍ବଦନ୍ତୀ ଅନୁସାରେ ଆଜକୁ ପ୍ରାୟ ୭୦୦ ବର୍ଷ ପୂର୍ବେ ରାଜା ଥୋ-ଥୋ-ରି ଙ୍କ ରାଜତ୍ୱ ସମୟରେ ଭାରତର କେତେକ ବୌଦ୍ଧ ପରିବ୍ରାଜକ କେତେକ ବୌଦ୍ଧ ପାଣ୍ଡୁଲିପି ତାଙ୍କୁ ଉପହାର ସ୍ୱରୂପ ଭେଟି ଦେବାକୁ ଯାଇଥିଲେ । ଦୁର୍ଭାଗ୍ୟବଶତଃ ତିବ୍ବତ ଭାଷାର ସେ ସମୟରେ କୌଣସି ଶବ୍ଦଲିପି ନ ଥିବାରୁ, ସେ ପାଣ୍ଡୁଲିପି କୌଣସି କାର୍ଯ୍ୟରେ ଲାଗିବ ନାହିଁ ଜାଣି ପରିବ୍ରାଜକମାନେ ନିରାଶ ହୋଇ ଫେରିଥିଲେ । ଏହି ଘଟଣାରେ ସେ ସମୟର ଯୁବରାଜ ସ୍ରୋନ୍‌ବ-ତାନ୍ (Sronb-tsan) ମର୍ମାହତ ହୋଇଥିଲେ ଓ ପ୍ରତିକାର ସ୍ୱରୂପ ତିବ୍ବତୀୟ ପଣ୍ଡିତ ଥୋନ୍ ମିଙ୍କୁ ଦକ୍ଷିଣ ଭାରତର ପ୍ରଖ୍ୟାତ ଶିକ୍ଷାକେନ୍ଦ୍ରମାନଙ୍କୁ ଲିପିଶାସ୍ତ୍ର, ଶବ୍ଦଶାସ୍ତ୍ର ଓ ବ୍ୟାକରଣ ଅଧ୍ୟୟନ କରିବାକୁ ପଠାଇଥିଲେ । ସେ ଏ ସବୁ ଶାସ୍ତ୍ରକୁ ସଫଳତା ସହିତ ଆୟତ୍ତ କରି ତିବ୍ବତୀୟ ଭାଷାର ବ୍ୟାକରଣ ସଂଗଠିତ କରିବା ସଂଗେ ସଂଗେ ସଂସ୍କୃତରେ ଲେଖାଯାଇଥିବା କେତେକ ବୌଦ୍ଧ ଗ୍ରନ୍ଥର ଅନୁବାଦ ମଧ୍ୟ କରିଥିଲେ । ଏହାକୁ ହିଁ ତିବ୍ବତ ଓ ଭାରତର ସାଂସ୍କୃତିକ ସମ୍ପର୍କର ପ୍ରଥମ ସୋପାନ ଭାବରେ ଧରି ନିଆଯାଇପାରେ । ଏଥି ସହିତ ତିବ୍ବତ ମାଟିରେ ବୌଦ୍ଧ ଧର୍ମର ମୂଳଦୁଆଟି ପଡ଼ିଗଲା । ତଥାପି ଏ କଥା ସ୍ୱୀକାର୍ଯ୍ୟ ଯେ ତିବ୍ବତୀୟ ସଂସ୍କୃତି ଏତେ ସହଜରେ ଭାରତରୁ ଆସିଥିବା ନୂତନ ଧର୍ମଟିକୁ ଗ୍ରହଣ କରି ପାରିନଥିଲା ।

ତିବ୍ବତର ମୂଳ ଧର୍ମ ସେତେବେଳେ ଫୋନ୍ (Phon) ଧର୍ମ ଥିଲା । ଏହା ମନ୍ତ୍ର, ଉପଚାର ଓ କୁସଂସ୍କାର ଉପରେ ଆଧାରିତ । ଅନ୍ୟ ଦିଗରେ ବୌଦ୍ଧ ଧର୍ମ ଯୁକ୍ତିଭିତ୍ତିକ ଓ ଉପଚାର ବିରୋଧୀ । ତେଣୁ ଏ ଦୁଇଟି ଧର୍ମ ମଧ୍ୟରେ ଏକ ପ୍ରକାର ସଂଘାତର ସୂତ୍ରପାତ ହେଲା । ରାଜାମାନେ ବୌଦ୍ଧ ଧର୍ମ ପ୍ରତି ଅନୁରାଗୀ ହେବା ସ୍ଥଳେ ପ୍ରଜାମାନେ ଫୋନ୍ ଧର୍ମରେ ଅଧିକ ବିଶ୍ୱାସ କରୁଥିଲେ । ତେଣୁ ତିବ୍ବତର ରାଜାଙ୍କ ନିମନ୍ତ୍ରଣ କ୍ରମେ ନାଳନ୍ଦା ବିଶ୍ୱବିଦ୍ୟାଳୟର ପ୍ରଖ୍ୟାତ ଆଚାର୍ଯ୍ୟ ଶାନ୍ତରକ୍ଷିତ ଏହି ବିରୋଧାଭାସର ଶିକାର ହୋଇଥିଲେ ।

ତାଙ୍କର ସେଠାରେ ରହଣି ସମୟରେ ତିବ୍ବତରେ ଦୈବୀ ଦୁର୍ବିପାକ ଦେଖା ଦେବାରୁ ଶାନ୍ତରକ୍ଷିତ ଓ ବୌଦ୍ଧଧର୍ମକୁ ପ୍ରଜାମାନେ ଦୋଷୀ ବୋଲି ସାବ୍ୟସ୍ତ କରିଥିଲେ । ଶାନ୍ତରକ୍ଷିତ ବାଧ୍ୟ ହୋଇ ସେ ଦେଶ ତ୍ୟାଗ କଲେ, କିନ୍ତୁ ତିବ୍ବତରେ ବୌଦ୍ଧ ଧର୍ମକୁ ବଞ୍ଚାଇ ରଖିବା ପାଇଁ ସେ ଅନ୍ୟ ଏକ ଉପାୟ ଚିନ୍ତା କଲେ । କଣ୍ଟା ଦେଇ କଣ୍ଟା କାଢ଼ିବାର ନୀତି ଅବଲମ୍ବନ କରି ସେ ଭାରତର ପ୍ରଖ୍ୟାତ ତାନ୍ତ୍ରିକ ବୌଦ୍ଧ ପଣ୍ଡିତ ପଦ୍ମ ସମ୍ଭବଙ୍କୁ ତିବ୍ବତକୁ ନିମନ୍ତ୍ରଣ କରି ଆଣିବାର ଉପଦେଶ ରାଜାଙ୍କୁ ଦେଲେ । ତାଙ୍କର ଏହି ପରାମର୍ଶ ଫଳପ୍ରଦ ହେଲା ଏବଂ ପଦ୍ମସମ୍ଭବ ତାନ୍ତ୍ରିକ ଜ୍ଞାନ କୌଶଳ ଦ୍ୱାରା ତିବ୍ବତର ସାଧାରଣ ଲୋକଙ୍କ ମନ ସହଜରେ ଜିଣି ନେଲେ । ଏହାରି ଫଳରେ ବୌଦ୍ଧ ଧର୍ମର ପ୍ରସାର ରାଜଦରବାରରୁ ଓହ୍ଲାଇ ଆସି ସାଧାରଣ ଜନତା ଅନ୍ତରରେ ସ୍ଥାନ ପାଇଲା । ତିବ୍ବତୀୟ ମାନେ ବର୍ତ୍ତମାନ ଯାଏଁ ପଦ୍ମସମ୍ଭବଙ୍କୁ ମହାନ ଗୁରୁର ଆସନ ଦିଅନ୍ତି ।

ନବମ ଶତାବ୍ଦୀରେ ପୁଣି ଥରେ ବୌଦ୍ଧ ଧର୍ମ ବିପର୍ଯ୍ୟୟର ସମ୍ମୁଖୀନ ହେଲା । ଏଥର କିନ୍ତୁ ବିରୋଧ ପ୍ରଜାଙ୍କ ସ୍ତରରୁ ନ ଆସି ରାଜାଙ୍କ ସ୍ତରରୁ ଆସିଥିଲା । ତିବ୍ବତର ତତ୍କାଳୀନ ରାଜା ଗ୍ଲାନ୍-ଡାର୍-ମା ଘୋର ବୌଦ୍ଧ ବିରୋଧୀ ଥିଲେ । ତେଣୁ ସେ ସିଂହାସନରେ ଅଭିଷିକ୍ତ ହେବା ମାତ୍ରେ ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ପ୍ରତି ଅକଥନୀୟ ଅତ୍ୟାଚାର ଆରମ୍ଭ କରିଦେଲେ । କିନ୍ତୁ ସେତେବେଳକୁ ବୌଦ୍ଧ ଧର୍ମ ସାଧାରଣ ଜନତାଙ୍କ ହୃଦୟରେ ଦୃଢ଼ ପ୍ରଭାବ ପକାଇ ସାରିଥିଲା । ତେଣୁ ରାଜାଙ୍କ ବୌଦ୍ଧ ବିଦ୍ୱେଷୀ ଆଚରଣ ଫଳରେ ତିବ୍ବତରେ ଗଣ ବିଦ୍ରୋହ ଦେଖା ଦେଲା । ଏହି ଗଣ ଆନ୍ଦୋଳନ ତିବ୍ବତରେ ରାଜତନ୍ତ୍ର ବିଲୋପର ଅନ୍ୟତମ କାରଣ ବୋଲି କଥିତ ଅଛି । ଏହା ପରେ ପରେ ତିବ୍ବତରେ ବୌଦ୍ଧ ଧର୍ମର ଭିତ୍ତିକୁ ଆହୁରି ଶକ୍ତିଶାଳୀ କରିବାର ଦାୟିତ୍ୱ ନେଇଥିଲେ ଭାରତର ବିକ୍ରମଶୀଳା ମହାବିହାରର ଆଚାର୍ଯ୍ୟ ଦୀପଙ୍କର ଶ୍ରୀଜ୍ଞାନ । ସେ ତିବ୍ବତରେ ଅତିସା ନାମରେ ବିଦିତ । ସେ ବୌଦ୍ଧ ଧର୍ମର ବିଭିନ୍ନ ଶାଖା- ଯଥା-ହୀନଯାନ, ମହାଯାନ ଓ ତନ୍ତ୍ରଯାନର ମୂଳତତ୍ତ୍ୱ ଗୁଡ଼ିକର ସମନ୍ୱୟ କରି ତାହାକୁ ଏକ ଉଦାରବାଦୀ ଓ ଯୁକ୍ତିବାଦୀ ଧର୍ମମତର ରୂପରେଖ ଦେବା ଫଳରେ ବୌଦ୍ଧ ଧର୍ମର ଜନପ୍ରିୟତା ଆହୁରି ବୃଦ୍ଧି ପାଇଥିଲା । ତାଙ୍କରି ଦର୍ଶନକୁ ଆଧାର କରି ତିବ୍ବତୀୟ ପଣ୍ଡିତ ସନ୍-ଖା-ପା (Tson-Kha-Pa) ଚତୁର୍ଦ୍ଦଶ ଶତାବ୍ଦୀରେ ଯେଉଁ ଧାର୍ମିକଧାରା ପ୍ରଚାର କରିଥିଲେ ତାହାହିଁ ପରବର୍ତ୍ତୀ କାଳରେ କ୍ରମାନ୍ୱୟ ଭାବରେ ଦଲାଇ ଲାମାମାନଙ୍କ ମାଧ୍ୟମରେ ତିବ୍ବତର ମୁଖ୍ୟ ଧର୍ମରୂପେ ପ୍ରତିଷ୍ଠିତ ହୋଇଛି ।

ଏଠାରେ ଓଡ଼ିଶା ସହିତ ତିବ୍ବତର ଯୋଗସୂତ୍ର ସମ୍ବନ୍ଧରେ ପଦେ ଅଧେ କହିବା ଉଚିତ ମନେ କରେ । ପୂର୍ବରୁ ବୌଦ୍ଧ ତାନ୍ତ୍ରିକ ପଦ୍ମସମ୍ଭବଙ୍କ କଥା ଉଲ୍ଲେଖ କରିଛି । ତାଙ୍କର ପ୍ରଚେଷ୍ଟା ଫଳରେ ବୌଦ୍ଧଧର୍ମ ତିବ୍ବତର ଜନସାଧାରଣଙ୍କ ହୃଦୟରେ ଦୃଢ଼ଭାବରେ

ପ୍ରତିଷ୍ଠିତ ହୋଇ ପାରିଥିଲା । ସେହି ପଦ୍ମସମ୍ଭବ ଉଡୀୟାନ (Uddiyan) ବା ଓଡ଼ିଶାର ରାଜା ଇନ୍ଦ୍ରଭୂତିଙ୍କ ପୋଷ୍ୟ ପୁତ୍ର ଥିଲେ । ବୌଦ୍ଧ ଧର୍ମ ପରବର୍ତ୍ତୀକାଳରେ ହୀନଯାନ ଓ ମହାଯାନ, ଏପରି ଦୁଇଟି ମୂଳଶାଖାରେ ବିଭକ୍ତ ହୋଇଥିଲା । ମହାଯାନର ଏକଧାରା ତନ୍ତ୍ର ଓ ଯୋଗଦର୍ଶନକୁ ସମ୍ମିଳିତ କରି ତନ୍ତ୍ରଯାନ ନାମକ ଏକ ସ୍ୱତନ୍ତ୍ର ଶାଖାର ରୂପ ନେଇଥିଲା । ଏହି ତନ୍ତ୍ରଯାନ ବା ବଜ୍ରଯାନର ଜଣେ ପ୍ରଧାନ ସିଦ୍ଧ ଥିଲେ ଇନ୍ଦ୍ରଭୂତି । ଇନ୍ଦ୍ରଭୂତିଙ୍କ ଦ୍ୱାରା ପ୍ରବର୍ତ୍ତିତ ତନ୍ତ୍ରଯାନର ପ୍ରସାର ତିବ୍ବତରେ ପଦ୍ମସମ୍ଭବଙ୍କ ମାଧ୍ୟମରେ ହୋଇଥିଲା । ଏହାବ୍ୟତୀତ ପ୍ରଖ୍ୟାତ ତିବ୍ବତୀୟ ପରିବ୍ରାଜକ ତାରାନାଥ ଓ ବୁଦ୍ଧଗୁପ୍ତ ତାଙ୍କର ଭ୍ରମଣ ବିବରଣୀରେ କଳିଙ୍ଗ ତଥା ଉଡ୍ର ବା ଓଡ଼ିଆନ୍ କଥା ବାରମ୍ବାର ଉଲ୍ଲେଖ କରିଛନ୍ତି । ଏଥିରୁ ତିବ୍ବତ ଓ ଓଡ଼ିଶାର ସମ୍ପର୍କ ଅତି ନିବିଡ଼ ଥିବାର ପ୍ରମାଣ ମିଳେ ।

ପ୍ରଫେସର, ଦର୍ଶନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

"The invasion of Tibet which terminated in His Holiness taking refuge in Indian territory is brutal colonialism"

- C. Rajagopalachari

# ତିବ୍ବତ ଓ ଭାରତୀୟ ଉପମହାଦେଶ

ଶରତ ଚନ୍ଦ୍ର ମିଶ୍ର

ଭାରତ, ଚୀନ ଓ ତିବ୍ବତର ସଭ୍ୟତା ବେଶ ପୁରାତନ । ଭାରତ ଓ ଚୀନ ଭଳି ଦୁଇଟି ବୃହତ ଦେଶ ମଧ୍ୟରେ ଅବସ୍ଥିତ ଥିବାରୁ, ତିବ୍ବତର ଉଭୟ ଦେଶ ଦ୍ୱାରା ପ୍ରଭାବିତ ହେବା ଓ ତିବ୍ବତ ନେଇ ଚୀନ ଓ ଭାରତର ସଂପର୍କ ପ୍ରଭାବିତ ହେବା ସ୍ୱାଭାବିକ । ତିବ୍ବତୀୟମାନେ ଏକଦା ଦୁର୍ଦ୍ଧର୍ଷ ଜାତି ଥିଲେ । ସେ ଦେଶରେ ବୌଦ୍ଧଧର୍ମର ପ୍ରଚାର ପରେ, ସେମାନେ ଶାନ୍ତିବାଦୀ ଓ ଯୁଦ୍ଧବିରୋଧୀ ହୋଇଗଲେ ଓ ଫଳତଃ ନିଜ ଦେଶର ନିରାପତ୍ତା ଓ ସୁରକ୍ଷା ଦିଗରେ ବିଶେଷ ଧ୍ୟାନ ଦେଇ ପାରିଲେ ନାହିଁ । ନିଜର ବିଲକ୍ଷଣ ଭୌଗୋଳିକ ଅବସ୍ଥିତି ହେତୁ, ସେମାନେ ପାଶ୍ଚାତ୍ୟ ଉପନିବେଶବାଦୀଙ୍କ କବଳରୁ ରକ୍ଷା ପାଇଯାଇଥିଲେ ମଧ୍ୟ ଚୀନର ସଂପ୍ରସାରଣ ବାଦରୁ ନିଜକୁ ରକ୍ଷା କରି ପାରିନାହାନ୍ତି । ଯେତେବେଳେ ଚୀନ ସବଳ ଓ ଦୃଢ଼ ଥାଏ, ତିବ୍ବତର ସ୍ୱାଧୀନତା ପରାହତ ହୁଏ । ଚୀନର ମଙ୍ଗୋଲ ଶାସକମାନେ ତ୍ରୟୋଦଶ ଶତାବ୍ଦୀର ପ୍ରାରମ୍ଭରେ ତିବ୍ବତ ଅଧିକାର କରିଥିଲେ । ଚୀନ ଦେଶର ମୂଳଶାସନ ଦୁର୍ବଳ ହୋଇଗଲେ, ତିବ୍ବତ ପୁଣି ସ୍ୱାଧୀନ ହୋଇଯାଏ । ଅଷ୍ଟାଦଶ ଶତାବ୍ଦୀରେ ଚୀନର ମାଞ୍ଚୁ ସମ୍ରାଟ ପୁଣି ତିବ୍ବତ ଅଧିକାର କରିଥିଲେ । କାଳକ୍ରମେ ପୁଣି ତିବ୍ବତ ସ୍ୱାଧୀନ ହୋଇଯାଇ ମଧ୍ୟ ୧୯୫୦ରେ ଚୀନର କମ୍ୟୁନିଷ୍ଟ ସରକାର ତିବ୍ବତକୁ ପୁଣି ନିଜ ଅଧୀନକୁ ଆଣିଲେ ଓ ବର୍ତ୍ତମାନ ଏହା ଚୀନର ଏକ ଅଂଶ ବୋଲି ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ । ଏକାଦିକ୍ରମେ ଏତେ ବର୍ଷ କାଳ ତିବ୍ବତ କେବେ ଚୀନର ଅଂଶ ହୋଇ ରହିନଥିଲା ।

ଭାରତ ଉପମହାଦେଶ ସହିତ ତିବ୍ବତର ସଂପର୍କ ପୁରାତନ ଓ ନିବିଡ଼ । ସପ୍ତମ ଶତାବ୍ଦୀରେ ତିବ୍ବତୀୟମାନେ ବୌଦ୍ଧଧର୍ମ ଗ୍ରହଣ କଲେ ଓ ଭାରତ ବର୍ଷ ସହିତ, ଯାହାକୁ ଆର୍ଯ୍ୟଭୂମି ବୋଲି ସେମାନେ କହନ୍ତି । ଗଭୀର ଧାର୍ମିକ ଓ ସାଂସ୍କୃତିକ ସମ୍ପର୍କ ସ୍ଥାପନ ହେଲା । ତିବ୍ବତରୁ ଶିକ୍ଷାର୍ଥୀ ଓ ବିଦ୍ୱାନ ବ୍ୟକ୍ତିମାନେ ହଜାର ହଜାର ସଂଖ୍ୟାରେ ଆସି ତତ୍‌କାଳୀନ ଭାରତୀୟ ବିଦ୍ୟାଳୟମାନଙ୍କରେ ଶିକ୍ଷାଲାଭ କରୁଥିଲେ । ବହୁ ସଂସ୍କୃତ ପୋଥି, ତିବ୍ବତୀୟ ଓ ଚୀନ ଭାଷାରେ ସେଇ ସମୟରେ ଅନୁବାଦିତ ହୋଇଥିଲା । ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀରେ ଭାରତରୁ ବୌଦ୍ଧଧର୍ମର ପ୍ରଭାବ ଲୋପ ହେବାପରେ, ତିବ୍ବତର

ଭାରତ ସହିତ ସଂପର୍କ କୋହଳ ହେଲା ଓ ଅନେକ ବର୍ଷ ଧରି ସମ୍ପର୍କ କ୍ଷୀଣ ହୋଇଗଲା ।

ତିବ୍ବତୀୟମାନେ ଏଇ ସମୟରେ ଭୁଟାନରେ ପ୍ରବେଶ କରି ସ୍ଥାୟୀ ଭାବରେ ବସବାସ କଲେ ଓ ସପ୍ତଦଶ ଶତାବ୍ଦୀରେ ଜଣେ ତିବ୍ବତୀୟ ଲାମା ଭୁଟାନରେ ଶାସନ ପ୍ରତିଷ୍ଠା କରିଥିଲେ । ତିବ୍ବତ ଓ ମଙ୍ଗୋଲିଆ ପରି ଭୁଟାନରେ ମଧ୍ୟ ଲାମାପନ୍ଥୀ ମହାଯାନ ବୌଦ୍ଧଧର୍ମ ପ୍ରଚଳିତ । ୧୯୧୦ ମସିହାର ପୁନାଖା ସନ୍ଧି ଅନୁସାରେ, ବର୍ତ୍ତମାନର ଭୁଟାନ ରାଜବଂଶକୁ ବ୍ରିଟିଶ ସରକାର ସ୍ୱୀକୃତି ପ୍ରଦାନ କଲେ ଓ ଭୁଟାନର ସଂପର୍କ ତିବ୍ବତ ସହିତ କୋହଳ ହେଲା । ଏତଦ ବ୍ୟତୀତ ୧୭୯୦ ମସିହାରେ, ନେପାଳର ଗୁର୍ଖାମାନେ ତିବ୍ବତ ଆକ୍ରମଣ କରି ଅଧିକାର କରିନେଇଥିଲେ । ଚୀନ ସରକାର, ଗୁର୍ଖାମାନଙ୍କୁ ତିବ୍ବତରୁ ବିତାଡିତ କଲେ ଓ ଅଭେଦ୍ୟ ହିମାଳୟକୁ ଅତିକ୍ରମ କରି ଆସି, ନେପାଳକୁ ପରାସ୍ତ କଲେ । ନେପାଳ କିଛି କାଳ ଚୀନ ସାମ୍ରାଜ୍ୟର କରଦ ରାଜ୍ୟ ହୋଇ ରହିଲା । ନେପାଳ ସରକାର ବ୍ରିଟିଶ ସରକାର ସହିତ ୧୮୬୦ ମସିହାରେ ଚୁକ୍ତି କରି, ନେପାଳରେ ଇଂରେଜ ସୈନ୍ୟଙ୍କର ଏକ ଟୁକୁରା ରହିବାକୁ ଅନୁମତି ଦେଲେ ଓ ଇଂରେଜ ସରକାର ନେପାଳକୁ ଆଭ୍ୟନ୍ତରୀଣ ବିଦ୍ରୋହ ଓ ବହିଃଆକ୍ରମଣ ବିରୁଦ୍ଧରେ ସୁରକ୍ଷା ଦେବା ନିମନ୍ତେ ପ୍ରତିଶ୍ରୁତି ବଦ୍ଧ ହେଲେ ।

ଊନବିଂଶ ଶତାବ୍ଦୀରେ ଏସିଆରେ ଦୁଇଟି ସାମ୍ରାଜ୍ୟ କାୟାବିସ୍ତାର କରୁଥାଏ । ଦକ୍ଷିଣ ଏସିଆରେ ବ୍ରିଟିଶ ସାମ୍ରାଜ୍ୟ, ମଧ୍ୟ ଓ ଉତ୍ତରର ଏସିଆରେ ରୁଷିଆର ସାମ୍ରାଜ୍ୟ । ଚୀନ ସାମ୍ରାଜ୍ୟ ଦୁର୍ବଳ ଅବସ୍ଥାରେ ଥାଏ ଓ ପାଶ୍ଚାତ୍ୟ ଶକ୍ତିମାନଙ୍କୁ ପ୍ରତିରୋଧ କରି ପାରୁନଥାଏ । ଏ ଅବସ୍ଥାର ସୁଯୋଗ ନେଇ ବ୍ରିଟିଶ ସରକାର ତାଙ୍କର ଭାରତ ସାମ୍ରାଜ୍ୟ ଓ ରୁଷିଆ ସାମ୍ରାଜ୍ୟ କେତେ ଗୁଡ଼ିଏ ମଧ୍ୟବର୍ତ୍ତୀ ରାଜ୍ୟ ସୃଷ୍ଟି କରି, ସେଗୁଡ଼ିକରେ ନିଜର ପ୍ରଭାବ ବଜାୟ ରଖିବାକୁ ଉଦ୍ୟମ କଲେ । ଆଫଗାନିସ୍ଥାନ ଓ ତିବ୍ବତ ସେ ମଧ୍ୟରୁ ମୁଖ୍ୟ । ବ୍ରିଟିଶ କର୍ଣ୍ଣେଲ ୟଙ୍ଗହଜବାଣ୍ଡ ୧୯୦୪ ମସିହାରେ ସୈନ୍ୟବାହିନୀ ଓ ଗୁର୍ଖା ବ୍ୟାଣ୍ଡ ନେଇ ଖୁବ ପାଟିତୁଣ୍ଡ ଜାକଜମକରେ ଲାସା ସହରରେ ପ୍ରବେଶ କଲେ । ଏ ପ୍ରବେଶ ସମୟରେ ଲାସାର ଲୋକମାନେ ପ୍ରବଳ କରତାଳି କରିଥିଲେ । ବ୍ରିଟିଶ ସୈନ୍ୟବାହିନୀ ଏହାକୁ ସମର୍ଥନ ବୋଲି ଭାବି ଆନନ୍ଦରେ ବିଭୋର ହୋଇ ଯାଇଥିଲେ । ତିବ୍ବତର ପରଂପରା ଅନୁସାରେ କିନ୍ତୁ ଅନିଷ୍ଟକାରୀ ଭୂତ, ପ୍ରେତ ମାନଙ୍କୁ ଘଉଡ଼ାଇବା ନିମନ୍ତେ ଲୋକେ ତାଳି ମାରନ୍ତି । ବ୍ରିଟିଶ ଅନୁପ୍ରବେଶକୁ ସେଠାକାର ଜନସାଧାରଣ ଦୁଷ୍ଟଗ୍ରହର ଅନୁପ୍ରବେଶ ବୋଲି ବିବେଚନା କରିଥିଲେ ମଧ୍ୟ ବ୍ରିଟିଶ ଶକ୍ତିକୁ ପ୍ରତିରୋଧ କରିବାର ଶକ୍ତି ତତ୍‌କାଳୀନ ତିବ୍ବତ ସରକାରର ନଥିଲା । ବ୍ରିଟିଶ ସରକାର ତିବ୍ବତକୁ ଏକ ସ୍ୱାଧୀନ ରାଷ୍ଟ୍ର ଭାବରେ ସ୍ୱୀକାର କରି, ତିବ୍ବତ ସଙ୍ଗରେ ଏକ ଚୁକ୍ତି ସଂପାଦନ କରିଥିଲେ । ଏ ଚୁକ୍ତିରେ ଚୀନକୁ ଅଂଶୀଦାର କରା ନ ହୋଇଥିବାରୁ, ଚୀନ ସରକାର ଗଭୀର ଅସନ୍ତୋଷ ପ୍ରକାଶ କରିଥିଲେ । ଏ ବିରୋଧାଭାଷର ଉପଶମ

ନିମନ୍ତେ ବ୍ରିଟିଶ ସରକାର ୧୯୧୪ ମସିହାରେ ସିମଲାଠାରେ ତିବ୍ବତ ଓ ଚୀନ ସରକାରଙ୍କ ପ୍ରତିନିଧିଙ୍କ ସହିତ ଏକ ତ୍ରିପାକ୍ଷିକ ଆଲୋଚନାର ଆୟୋଜନ କଲେ । ତିନୋଟି ଯାକ ବିବାଦମାନ ପକ୍ଷ ପ୍ରଥମ ଥର ପାଇଁ ଆପୋଶ ଆଲୋଚନା କଲେ ମଧ୍ୟ କୌଣସି ଏକ ସମାଧାନରେ ସମ୍ମତ ହୋଇ ପାରିଲେ ନାହିଁ । ଭାରତ, ଚୀନ ଓ ତିବ୍ବତ ମଧ୍ୟରେ ସୀମା ନିରୁପଣ ଓ ଚିହ୍ନଟ ଥିଲା, ଏ ଆଲୋଚନାର ଲକ୍ଷ୍ୟ । ଚୀନ ପ୍ରତିନିଧି ମୂଳ ଦଲିଲରେ ସ୍ୱାକ୍ଷର କରିଥିଲେ ମଧ୍ୟ, ପରେ ଏହାକୁ ସମର୍ଥନ ବା ଗ୍ରହଣ କରିନଥିଲେ । ବ୍ରିଟିଶ ଭାରତ ଓ ତିବ୍ବତ କିନ୍ତୁ ସୀମା ସରହଦ ନେଇ ମାନଚିତ୍ର ଓ ନକ୍ସାରେ ଏକ ସୀମା ରେଖା ଉପରେ ରାଜି ହେଲେ, ଯାହାକି ମ୍ୟାକମାହନ ଲାଇନ ନାମରେ ବିଦିତ । ଭାରତ ୧୯୪୭ରେ ସ୍ୱାଧୀନତା ଲାଭ କରିବା ସମୟକୁ, ସେଇ ଭାରତ ତିବ୍ବତ ଚୁକ୍ତି ଓ ମ୍ୟାକମାହନ ଲାଇନ ବଳବତ୍ତର ଥିଲା । ଭାରତ ଓ ଚୀନ ଦୁଇଟି ପାର୍ଶ୍ୱବର୍ତ୍ତୀ ରାଷ୍ଟ୍ର ହେଲେ ହେଁ, ଏ ଦୁଇଦେଶ ମଧ୍ୟରେ ଦୁର୍ଭେଦ୍ୟ ହିମାଳୟର ଅବସ୍ଥିତି ହେତୁ, ବିଶେଷ କିଛି ସମ୍ପର୍କ ନଥାଏ । କେତେକ ପରିବ୍ରାଜକଙ୍କ ଭ୍ରମଣ, ସେମାନଙ୍କର ବର୍ଣ୍ଣନା ଓ ଧର୍ମ ମତର ବିନିମୟ ବ୍ୟତୀତ, ଉଭୟ ଦେଶର ଶାସକ ଓ ସାଧାରଣ ଲୋକଙ୍କର ଅନ୍ୟ ଦେଶ ସମ୍ବନ୍ଧରେ ବିଶେଷ ଧାରଣା ନଥିଲା । କୂଟନୈତିକ ସ୍ତରରେ, ଓଲନ୍ଦାଜ ଓ ପର୍ତ୍ତୁଗୀଜ ମାନଙ୍କ ବିବରଣୀରୁ ଚୀନ ସମ୍ରାଟଙ୍କ ଦରବାରରେ ମୋଗଲ ସମ୍ରାଟ ସାହାଜାହାନଙ୍କ ଦୂତ ଅବସ୍ଥିତ ଥିବା ଜଣାଯାଏ । ଦିଲ୍ଲୀ ମୋଗଲ ଦରବାରରେ କିନ୍ତୁ କୌଣସି ଚୀନ ଦୂତ ଉପସ୍ଥିତ ଥିବାର ଜଣାଯାଏନାହିଁ । ବ୍ରିଟିଶ ସରକାରଙ୍କର ତିବ୍ବତ ସହିତ ବିଂଶ ଶତାବ୍ଦୀରେ ଚୁକ୍ତି ପରେ, ଲାସା ଠାରେ ବ୍ରିଟିଶ ସରକାରଙ୍କର ଜଣେ ଏଜେଣ୍ଟ ଓ ଗୋଟିଏ ମିଲିଟାରୀ ମିଶନ ଅବସ୍ଥାପିତ ଥିଲା । ଭାରତ ସ୍ୱାଧୀନ ହେଲା ପରେ ମଧ୍ୟ ଏ ପ୍ରକ୍ରିୟା ଚାଲୁ ରହିଥିଲା ।

ସ୍ୱାଧୀନ ଭାରତର ଦୁଇବର୍ଷର ଶୈଶବ ଅବସ୍ଥାରେ ଉତ୍ତରରେ କମ୍ୟୁନିଷ୍ଟ ଚୀନ ସରକାରର ଅଭ୍ୟୁଦୟ ହୁଏ । ଚୀନର କମ୍ୟୁନିଷ୍ଟ ନେତାମାନେ ଭାରତୀୟ କଂଗ୍ରେସ ନେତାଙ୍କର ବ୍ରିଟିଶ ରାଜ୍ୟଗୋଷ୍ଠୀ ସହିତ ସମ୍ପର୍କ, ଇଂଲଣ୍ଡରେ ପଢ଼ାଶୁଣା ଓ ଚୀନ କ୍ୟୁମିଙ୍ଗଟାଙ୍ଗ ନେତା ଚିୟାଂ କାଇସେକଙ୍କ ସହିତ ଭଲ ସମ୍ପର୍କ ହେତୁ, ସେମାନଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ବିଶେଷତଃ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଚିୟାଂ ଦଂପତିଙ୍କ ଭାରତ ଆଗମନ, ପଣ୍ଡିତ ନେହେରୁଙ୍କ ସହିତ ବନ୍ଧୁତା ପ୍ରଦର୍ଶନ ଓ ପଣ୍ଡିତ ନେହେରୁଙ୍କ କୁଟିଙ୍ଗଟାଙ୍ଗ ଚୀନକୁ ସାହାଯ୍ୟ କରିବା ନିମନ୍ତେ ମେଡ଼ିକାଲ ମିଶନ ପ୍ରେରଣ ହେତୁ, ନେହରୁଙ୍କୁ ସେମାନେ ସହଜରେ ବିଶ୍ୱାସ କରିପାରୁନଥିଲେ । ଅପର ପକ୍ଷରେ ଚୀନ ସରକାରକୁ ସ୍ୱୀକୃତି, ଜାତିସଂଘ ସଭ୍ୟ ପଦ ନିମନ୍ତେ ସମର୍ଥନ ପ୍ରଦାନ କରି ଓ ଉପନିବେଶବାଦ ବିରୁଦ୍ଧରେ ସାଲିସହୀନ ସଂଗ୍ରାମ କରିବା ହେତୁ, ଚୀନ ସରକାରଙ୍କର ଭାରତ ପ୍ରତି କିଛିଟା ସଦିଚ୍ଛା ମଧ୍ୟ ଜାଗ୍ରତ ହୋଇଥାଏ ।

ଏହି ସ୍ନେହ ଘୃଣା ସଂପର୍କର ଅବସାନ ଘଟାଇ, ଅକ୍ଟୋବର ୧୯୫୦ ମସିହାରେ ଚୀନ ସୈନ୍ୟବାହିନୀ ତିବ୍ବତରେ ପ୍ରବେଶ କଲେ । ସାମରିକ କ୍ଷେତ୍ରରେ ଦୁର୍ବଳ ତିବ୍ବତ, ଜାତିସଂଘରେ ଆପତ୍ତି କଲା । ଭାରତ ସେ କାଳରେ ତିବ୍ବତକୁ ଏକ ସ୍ୱାଧୀନରାଷ୍ଟ୍ର ହିସାବରେ ସ୍ୱୀକାର କରୁଥିଲେ ମଧ୍ୟ, ଜାତିସଂଘରେ ତିବ୍ବତକୁ ସମର୍ଥନ କଲା ନାହିଁ । ଦୁଇହଜାର ବର୍ଷର ଇତିହାସରେ, ତିବ୍ବତ ମଝିରେ ମଝିରେ କେବେକେବେ ଚୀନର ସାର୍ବଭୌମତ୍ୱ ସ୍ୱୀକାର କରିଥିଲେ ମଧ୍ୟ, ପ୍ରଥମ ଥର ପାଇଁ ଚୀନ ଭୂଖଣ୍ଡର ଅଂଶବିଶେଷ ହୋଇଗଲା । ଦୁଇହଜାର ବର୍ଷର ଶାନ୍ତିପୂର୍ଣ୍ଣ ଚୀନ ଭାରତ ସୀମାରେ ଅଶାନ୍ତ ବାତାବରଣ ସୃଷ୍ଟି ହୋଇ, ଚୀନ-ଭାରତ ଦ୍ୱିପାକ୍ଷିକ ସଂପର୍କ ଏକ ନୂଆ ମୋଡ଼ ନେଲା । ତିବ୍ବତକୁ ଜାତିସଂଘରେ ସମର୍ଥନ ନ କଲେ ମଧ୍ୟ, ଭାରତ, ତିବ୍ବତକୁ ଚୀନର ଅଂଶ ବିଶେଷ ବୋଲି ହଠାତ୍ ସ୍ୱୀକାର ନକରି, ପ୍ରାୟ ଦୁଇ ବର୍ଷ କାଳ ତିବ୍ବତ ସହିତ କୂଟନୈତିକ ସମ୍ପର୍କ ଛିନ୍ନ ନ କରି ଲାସାଠାରେ ଦୂତାବାସ ରଖିଥିଲା । ଏତଦମଧ୍ୟରେ ଚୀନ ସରକାରଙ୍କ ଚାପ ଆଗରେ ମୁଣ୍ଡ ନୁଆଇଁ ଦଲାଇଲାମା ୧୯୫୧ ମେ ମାସରେ ଚୀନ ସହିତ ସତର ଦଫା ଚୁକ୍ତିସଂପାଦନ କରି ତିବ୍ବତକୁ ଚୀନ ମୂଳ ଭୂଖଣ୍ଡର ଅଂଶବିଶେଷ ବୋଲି ସ୍ୱୀକାର କଲେ ।

ତିବ୍ବତ ସଂପର୍କରେ ଭାରତ ଓ ଚୀନର ଦ୍ୱିପାକ୍ଷିକ ସଂପର୍କ ସ୍ଥିର କରିବାକୁ ଭାରତ ଓ ଚୀନ ମଧ୍ୟରେ ଆଲୋଚନା ହୋଇ ୧୯୫୪ ମସିହାରେ ଏକ ପାଞ୍ଚଦଫା ସମ୍ବଳିତ ରାଜିନାମା ସ୍ୱାକ୍ଷର ହୁଏ । ଏ ରାଜିନାମାରେ ତିବ୍ବତ ନେତାମାନେ ପକ୍ଷ ନଥିଲେ । ଏ ରାଜିନାମାର ନାମ "ଭାରତ ଓଚୀନର ତିବ୍ବତ ଅଞ୍ଚଳ ମଧ୍ୟରେ ବାଣିଜ୍ୟ ଓ ଅନ୍ୟାନ୍ୟ ସମ୍ପର୍କ" ହେଲେ ମଧ୍ୟ, ସାଧାରଣରେ ଏହା ପଞ୍ଚଶୀଳ ଚୁକ୍ତିନାମରେ ବିଦିତ । ତିବ୍ବତକୁ ଚୀନର ଅଂଶ ବୋଲି ଭାରତ ଗ୍ରହଣ କଲା ଓ ଲାସାଠାରେ ନିଜର ଦୂତାବାସ ଓ ମିଲିଟାରୀ ମିଶନ ଉଠାଇ ଆଣିଲା । ହିନ୍ଦୀ-ଚୀନ ଭାଇ-ଭାଇର ପର୍ବ ଓ ବୈଦେଶିକ ନୀତିରେ କମ୍ୟୁନିଷ୍ଟ ଦେଶମାନଙ୍କ ସହିତ ସାଲିସ କରି, ଗୋଷ୍ଠୀ ନିରପେକ୍ଷତାର ଆରମ୍ଭ ହୁଏ ।

ଚୀନରେ ବୈପ୍ଲବିକ ପରିବର୍ତ୍ତନ ଓ ଦେଶର ପ୍ରଗତିଶୀଳ ନୀତିରେ ପ୍ରଭାବିତ ହୋଇ, ଭାରତୀୟ ରାଜନୀତିଜ୍ଞ ଓ କୁଟନୀତିଜ୍ଞମାନେ ଚୀନ ପ୍ରତି ଉଦାରତା ପ୍ରଦର୍ଶନ କରି, ତିବ୍ବତର ସ୍ୱାର୍ଥକୁ ବଳି ଦେଲେ ଓ ନିଜର ବ୍ରିଟିଶ ସମୟର ସୁବିଧା ଓ ପ୍ରାଧାନ୍ୟକୁ ସମର୍ପଣ କଲେ ମଧ୍ୟ, ତାର ପ୍ରତିବଦଳରେ ଚୀନ ଠାରୁ କୌଣସି ପ୍ରତିଦାନ ପାଇଲେ ନାହିଁ । ପଞ୍ଚଶୀଳର କୌଣସି ଗୋଟିଏ ନୀତିକୁ ଚୀନ ପାଳନ କଲା ନାହିଁ । ତିବ୍ବତ ଓ ଭାରତ ମଧ୍ୟରେ ବିଶେଷ କିଛି ବାଣିଜ୍ୟ କାରବାର ହେଲାନାହିଁ । ଏ ଚୁକ୍ତିନାମାର ଦୁଇଟି ପ୍ରଧାନ ସର୍ତ୍ତ, ଯଥା, କୌଣସି ଦେଶ ଅନ୍ୟ ଦେଶର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବ ନାହିଁ ଓ ଦେଶର ଅଖଣ୍ଡତାକୁ ସ୍ୱୀକାର କରିବାରେ ଚୀନ କେବେହେଲେ ଆଗ୍ରହ ପ୍ରକାଶ କରି

ନାହିଁ ।

ପ୍ରାୟ ତିନିବର୍ଷ କାଳ ( ୧୯୫୧-୫୪) ଦ୍ୱିପାକ୍ଷିକ ଆଲୋଚନା ପରେ ଏ ରାଜିନାମା ସ୍ୱାକ୍ଷରିତ ହୋଇଥିଲା । ଏ ଆଲୋଚନା ସମୟରେ ଚୀନ-ଭାରତର ସୀମା ଚିହ୍ନଟ କରି, ଉଭୟ ଦେଶ ମଧ୍ୟରେ ସୀମା ବିବାଦ ମେଣ୍ଟାଯିବାର ଏକ ସୁଯୋଗ ପ୍ରାପ୍ତ ହୋଇଥିଲା । ଭାରତୀୟ ପ୍ରତିନିଧି ଦଳର ନେତା ସର୍ଦ୍ଦାର କେ.ଏମ. ପାନିକର, ଆଲୋଚନା ସମୟରେ ସୀମା ପ୍ରଶ୍ନ କେତେବେଳେ ହେଲେ ଉତ୍‌ଥାପନ କରିନଥିଲେ । ତାଙ୍କର ଯୁକ୍ତି ଥିଲା ଯେ, ଚୀନ ସୀମା ପ୍ରଶ୍ନ ନ ଉଠାଉଥିବା ଅର୍ଥ, ଚୀନ ସୀମାର ସ୍ଥିତାବସ୍ଥା ଅର୍ଥାତ ମ୍ୟାକମାହନ ସୀମା ରେଖାକୁ ମାନି ନେଉଛି । ଚୀନ ପକ୍ଷ ଚତୁରତାର ସହିତ ସୀମା ପ୍ରଶ୍ନକୁ ଏଡାଇ ଏହାକୁ ଏକ ଅମୀମାଂସିତ ସମସ୍ୟା କରି ରଖିଦେଲେ ଓ ପରବର୍ତ୍ତୀ କାଳେ ମ୍ୟାକମାହନ ସୀମାରେଖାକୁ ଅସ୍ୱୀକାର କଲେ । ଫଳତଃ ୧୯୬୨ରେ ସୀମା ବିବାଦ ନେଇ ଚୀନ-ଭାରତ ଯୁଦ୍ଧ ହେଲା । ପଞ୍ଚଶୀଳ ରାଜିନାମା ପରେ ଚୀନ ସମାରିକ ବାହିନୀ ଲାସାରେ ଅବସ୍ଥାପିତ ହେଲେ । ତିବ୍ବତକୁ ଚୀନ ମୂଳ ଭୂଖଣ୍ଡ ସହିତ ମିଶ୍ରଣ ପ୍ରକ୍ରିୟାରେ ତିବ୍ବତ ସହିତ ଚୀନ ସିକିୟାଙ୍ଗ ସଂଯୋଗ ନିମନ୍ତେ ରାସ୍ତା ଭାରତର ଆକସାଇ ଚୀନ ମଧ୍ୟ ଦେଇ ନିର୍ମାଣ କରି ଭାରତର ଏକ ବିରାଟ ଅଞ୍ଚଳ ଅଧିକାର କଲେ । ଭାରତର ଉତ୍ତର ପୂର୍ବ ସୀମାନ୍ତର ନିକଟବର୍ତ୍ତୀ ଅଞ୍ଚଳ ଓ ତିବ୍ବତରେ ଅନେକ ଛୋଟ ଛୋଟ ବିମାନ ବନ୍ଦର ଓ ରାସ୍ତାଘାଟ ନିର୍ମାଣ କଲେ । ଫଳତଃ ଚୀନ ସେନା ଭାରତ ସୀମାକୁ ଅନାୟାସରେ ଆସି ପାରିଲେ । କିଛି ବର୍ଷ ପରେ ତିବ୍ବତରୁ ନେପାଳର କାଠମାଣ୍ଡୁକୁ ଚୀନ ଏକ ରାଜପଥ ନିର୍ମାଣ କଲା । ପାକିସ୍ଥାନ ଅଧିକୃତ କାଶ୍ମୀର କାରାକୋରମ ଗିରିପଥରେ ଚୀନ ଓ ପାକିସ୍ଥାନକୁ ସଂଯୋଗ କରି ଏକ ରାଜପଥ ଚୀନ ସାହାଯ୍ୟରେ ନିର୍ମାଣ ହୋଇଛି । ଏଇସବୁ ରାଜପଥ ଓ ଗିରିପଥ ନିର୍ମାଣ ଫଳରେ ଭାରତୀୟ ଉପମହାଦେଶ ଆଉ ଚୀନ ବିରୁଦ୍ଧରେ ହିମାଳୟ ଦ୍ୱାରା ସୁରକ୍ଷିତ ନୁହେଁ ।

ତିବ୍ବତ ସଂସ୍କୃତି ଓ ଜୀବନଧାରାକୁ ବିକ୍ଷିପ୍ତ କରିବାକୁ ମୂଳ ଚୀନାବାସୀମାନଙ୍କର ପ୍ରଚେଷ୍ଟା ଓ ଚୀନ ଶାସକଙ୍କ ଦମନ ନୀତି ବିରୁଦ୍ଧରେ ତିବ୍ବତରେ ଅସନ୍ତୋଷ ବାନାବାନ୍ଧି ବିଦ୍ରୋହ ଜାତ ହୁଏ । ତିବ୍ବତର ମୁଖ୍ୟ ଧର୍ମନେତା ଦଲାଇ ଲାମା ୧୯୫୯ ମସିହାରେ ତାଙ୍କର ଅନୁଚର ମାନଙ୍କ ସହିତ ଭାରତ ପଳାଇ ଆସି, ରାଜନୈତିକ ଶରଣ ଭିକ୍ଷା କରନ୍ତି । ସେମାନଙ୍କୁ ଶରଣାର୍ଥୀ ଭାବେ ଗ୍ରହଣ କରିବାକୁ ତତକାଳୀନ ଆମେରିକାର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ସଫଳତାର ସହିତ ପ୍ରବର୍ତ୍ତାଇଲେ ଓ ପ୍ରତିବଦଳରେ ତାରାପୁର ଆଣବିକ କେନ୍ଦ୍ର ପ୍ରତିଷ୍ଠା ଦିଗରେ କାନାଡାର ସାହାଯ୍ୟ ବ୍ୟବସ୍ଥା କରାଇଦେଲେ । ଭାରତ ତିବ୍ବତୀୟ ଶରଣାର୍ଥୀ ମାନଙ୍କ ରହଣି ବ୍ୟବସ୍ଥା କରି, ଦଲାଇଲାମାଙ୍କୁ ଧର୍ମଶାଳାଠାରେ ଏକ ଅସ୍ଥାୟୀ ନିର୍ବାସିତ ସରକାରର ମର୍ଯ୍ୟାଦା ପ୍ରଦାନ କଲା । ଭାରତ ଓ ଚୀନର ସମ୍ପର୍କର

ତିକ୍ତତା ବୃଦ୍ଧି ପାଇ, ଚୀନ ଭାରତର ପାର୍ଶ୍ୱବର୍ତ୍ତୀ ଦେଶ ନେପାଳ, ପାକିସ୍ତାନ, ବ୍ରହ୍ମଦେଶ ଆଦିକୁ ସାହାଯ୍ୟ ପ୍ରଦାନ କରି, ଭାରତ ବିରୋଧୀ କାର୍ଯ୍ୟରେ ପ୍ରୋତ୍ସାହନ କଲା । ପାକିସ୍ତାନକୁ ଆଣବିକ କୌଶଳ, ରକେଟ ଆଦି ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର କୌଶଳ ପ୍ରଦାନ କରି, ସାମରିକ କ୍ଷେତ୍ରରେ ଭାରତର ଏକ ସଫଳ ପ୍ରତିଦ୍ୱନ୍ଦୀ ଭାବରେ ଉତଥାପନ କରିବାରେ ଚୀନର ଭୂମିକା କିଛି କମ ନୁହେଁ । ପରବର୍ତ୍ତୀ କାଳରେ ଆମେରିକା ଓ ଚୀନର ସମ୍ପର୍କରେ ସମୀକରଣ ସୃଷ୍ଟି କରିବାରେ ପାକିସ୍ତାନ ଏକ ନିର୍ଣ୍ଣାୟକ ଭୂମିକା ପାଳନ କରିଥିଲା । ବିଗତ ଶତାବ୍ଦୀର ସପ୍ତମ ଦଶକ ବେଳକୁ ପାକିସ୍ତାନ, ଆମେରିକା ଓ ଚୀନ ଭାରତ ବିରୁଦ୍ଧରେ ଏକଜୁଟ ହେବାରୁ, ଭାରତକୁ ସାମରିକ ବ୍ୟୟ ବିଶେଷ ଭାବରେ ବୃଦ୍ଧି କରିବାକୁ ପଡ଼ିଲା । ଏହା ଆର୍ଥିକ ପ୍ରଗତି ଦିଗରେ ବାଧା ସୃଷ୍ଟି କଲା ।

ଦଲାଇ ଲାମାଙ୍କ ଆଶ୍ରୟ, ଭାରତର ବୈଦେଶିକ ସମ୍ପର୍କରେ ଏକ କାରକ ଭାବେ କାର୍ଯ୍ୟ କରୁଛି । ତିବ୍ବତ ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ହୋଇ ପାରିଲେ, ଚୀନ ଓ ଭାରତ ମଧ୍ୟରେ ଥିବା ସନ୍ଦେହ ଓ ଶତ୍ରୁତାର ବାତାବରଣରେ କିଛିଟା ଉପଶମ ଘଟିବ ଓ ଭାରତୀୟ ଉପମହାଦେଶର ଅନ୍ୟାନ୍ୟ ଦେଶମାନଙ୍କ ସମ୍ବନ୍ଧରେ ଚୀନର ଆଗ୍ରହ କିଛିଟା ହ୍ରାସ ପାଇବା ସମ୍ଭାବନା ।

ଦଲାଇ ଲାମା ବିଗତ ୪୫ ବର୍ଷ ଧରି ପୃଥିବୀର ବିଭିନ୍ନ ଦେଶ ପରିଭ୍ରମଣ କରି ଓ ବିଭିନ୍ନ ରାଷ୍ଟ୍ର ନେତାମାନଙ୍କୁ ସାକ୍ଷାତ କରି, ଉପଲବ୍ଧି କରି ସାରିଲେଣି ଯେ, ଯଦିଓ ତିବ୍ବତବାସୀଙ୍କ ଦୁର୍ଦ୍ଦଶା ପ୍ରତି ବହୁ ଦେଶ ଓ ନେତା ମାନଙ୍କର ସହାନୁଭୂତି ଅଛି, ତଥାପି ତିବ୍ବତକୁ ଚୀନ କବଳରୁ ମୁକ୍ତ କରିବା ନିମନ୍ତେ, ସେ କୌଣସି ଦେଶଠାରୁ ସାମରିକ ସାହାଯ୍ୟ ପାଇପାରିବେ ନାହିଁ । ତିବ୍ବତରେ ଆଭ୍ୟନ୍ତରୀଣ ବିଦ୍ରୋହ ଓ ଖେମ୍ପା ଉପଜାତିଙ୍କର ତିବ୍ବତ ମଧ୍ୟରେ ଗଣ୍ଡଗୋଳ ସୃଷ୍ଟି କରିବାର ଉଦ୍ୟମ ମଧ୍ୟ ଚୀନ ସୈନ୍ୟମାନଙ୍କ ଦ୍ୱାରା କଠୋର ହସ୍ତରେ ଦମନ ହୋଇଛି । ତେଣୁ ଚୀନର କେନ୍ଦ୍ର ସରକାର ଦୃଢ଼ ଥିବା ପର୍ଯ୍ୟନ୍ତ ତିବ୍ବତର ସ୍ୱାଧୀନତା ସମ୍ଭବପର ନୁହେଁ । ସେ ତେଣୁ ବର୍ତ୍ତମାନ ତିବ୍ବତ ଉପରେ ଚୀନର ସାର୍ବଭୌମତ୍ୱକୁ ସ୍ୱୀକାର କରି, ତିବ୍ବତ ନିମନ୍ତେ କିଛି ସ୍ୱତନ୍ତ୍ରତା ଦାବୀ କରୁଛନ୍ତି ।

ସେ ବିଶ୍ୱଦରବାରରେ ପେଶ କରୁଥିବା ଶାନ୍ତି ପ୍ରସ୍ତାବରେ ପାଞ୍ଚଟି ଅଂଶ ଅଛି । ସେଗୁଡ଼ିକ ହେଲା-

୧- ସମସ୍ତ ତିବ୍ବତ ଅଞ୍ଚଳକୁ ଶାନ୍ତିପୂର୍ଣ୍ଣ ଅଞ୍ଚଳ ଭାବରେ ଗ୍ରହଣ କରାଯାଉ ।

୨ - ମୂଳ ଚୀନାବାସୀଙ୍କୁ ତିବ୍ବତରେ ବସବାସ କରିବାକୁ ଦିଆନଯାଉ । ଆଉ ଅଧିକ ଚୀନାବାସୀ ତିବ୍ବତକୁ ଆସିଲେ, ଖୁବ୍ ଶୀଘ୍ର ତିବ୍ବତରେ ତିବ୍ବତୀୟମାନେ ସଂଖ୍ୟା ଲଘିଷ୍ଠ ହୋଇଯିବେ ।

୩ – ତିବ୍ବତବାସୀଙ୍କର ମୌଳିକ ମାନବିକ ଅଧିକାର ଓ ଗଣତନ୍ତ୍ର ସ୍ୱାଧୀନତାକୁ ସ୍ୱୀକାର କରାଯାଉ ।

୪ – ତିବ୍ବତରେ ଚୀନର ପରମାଣୁ ଅସ୍ତ୍ର ଉତ୍ପାଦନ ବନ୍ଦ ହେଉ ଓ ତିବ୍ବତର ସ୍ୱାଭାବିକ ପରିବେଶକୁ ନଷ୍ଟ କରାନଯାଉ । ପରମାଣୁ ତେଜସ୍କ୍ରିୟ ଦ୍ରବ୍ୟସବୁ ତିବ୍ବତରେ ଗଦା କରାନଯାଉ ।

୫ – ତିବ୍ବତର ଭବିଷ୍ୟତ ଓ ତିବ୍ବତ-ଚୀନ ସମ୍ପର୍କ ସମ୍ବନ୍ଧରେ ଆଲୋଚନା ଆରମ୍ଭ ହେଉ ।

ଦଲାଇଲାମାଙ୍କ ପ୍ରତିନିଧି ଓ ଚୀନ ସରକାରଙ୍କ ପ୍ରତିନିଧିଙ୍କ ମଧ୍ୟରେ ଦୁଇଦଫା ଆଲୋଚନା ସେପ୍ଟେମ୍ବର ୨୦୦୨ ଓ ଜୁନ ୨୦୦୩ରେ ହୋଇ ସାରିଲାଣି । ଏ ଆଲୋଚନା ଏପର୍ଯ୍ୟନ୍ତ ଫଳପ୍ରସୂ ନ ହେଲେ ମଧ୍ୟ, ଦୁଇପକ୍ଷ ମଧ୍ୟରେ ଆଲୋଚନା ହେବା ହିଁ ଏକ ଶୁଭସଂକେତ ।

ଆମ ପୂର୍ବ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀଙ୍କ ୨୦୦୩ ଜୁନ ମାସରେ ଚୀନ ଭ୍ରମଣ ପରେ, ଦୁଇଦେଶ ମଧ୍ୟରେ କିଛିଟା ସଦିଚ୍ଛା ସୃଷ୍ଟି ହୋଇଛି । ଉଭୟ ଚୀନ ଓ ଭାରତ, ବର୍ତ୍ତମାନ ଅର୍ଥନୈତିକ ପ୍ରଗତି ଉପରେ ଅଧିକ ଜୋର ଦେଉଛନ୍ତି ଓ ସୀମା ବିବାଦକୁ ରାଜନୈତିକ ସ୍ତରରେ ସମାଧାନ କରିବା ନିମନ୍ତେ ଆଗ୍ରହ ପ୍ରକାଶ କରୁଛନ୍ତି । ଏ ପରିବର୍ତ୍ତିତ ବାତାବରଣର ପରିପ୍ରେକ୍ଷୀରେ ଚୀନ ଓ ଦଲାଇଲାମାଙ୍କ ମଧ୍ୟରେ ଆଲୋଚନାର ବାତାବରଣ ସୃଷ୍ଟି କରିବାରେ ଭାରତ ସାହାଯ୍ୟ ସହଯୋଗ ସୃଷ୍ଟି କରିବା ଉଚିତ । ଦଲାଇ ଲାମାଙ୍କୁ ଚୀନ ସରକାରରେ ଆଳଙ୍କାରିକ ଉପରାଷ୍ଟ୍ରପତି କରି କୌଣସି ଏକ ପଦବୀ ପ୍ରଦାନ କରି ତିବ୍ବତକୁ କିଛିଟା ସ୍ୱତନ୍ତ୍ରତା ପ୍ରଦାନ କରି, ତିବ୍ବତ ସମସ୍ୟାର ସମାଧାନ ଦିଗରେ କେତେକ ପାଶ୍ଚାତ୍ୟ ରାଷ୍ଟ୍ର ଆଗ୍ରହ ପ୍ରକାଶ କରୁଛନ୍ତି । ଏ ପ୍ରଚେଷ୍ଟା ସଫଳ ହେଲେ, ଏହା ଭାରତ ପ୍ରତି ଶୁଭଦାୟକ ହେବ ।

ପ୍ଲଟ ନଂ - ଡି୨୮,
ବିଜେବି ନଗର, ଭୁବନେଶ୍ୱର-୧୪

(ଲେଖକ ଅବସରପ୍ରାପ୍ତ ପୁଲିସ ଡିଜି ଏବଂ
ପତ୍ରପତ୍ରିକାରେ ସମସ୍ୟାମୂଳକ ଲେଖା ପାଇଁ ସୁପରିଚିତ)

# ଭାରତ ଓ ତିବ୍ବତର ବନ୍ଧୁତାରେ ଭଗବାନ ବୁଦ୍ଧ

ସୁବ୍ରତ କୁମାର ସୁବୁଦ୍ଧି

ବୌଦ୍ଧଧର୍ମର ସୁବିଦିତ ସାଧନା-ସ୍ଥଳୀ ତିବ୍ବତ, ଏକ ଦୁର୍ଗମ ଏବଂ ମନୋରମ ଭୂଖଣ୍ଡ ଅଟେ । ଭାରତ ଏବଂ ତିବ୍ବତ ମଧ୍ୟରେ ଥିବା ସମ୍ପର୍କ ଅତି ପ୍ରାଚୀନ । ଏକାଦଶ ଶତାବ୍ଦୀରେ ଭାରତୀୟ ଆଚାର୍ଯ୍ୟ ପ୍ରଜ୍ଞା ବର୍ମାଙ୍କ କହିବା ଅନୁଯାୟୀ ''ମହାଭାରତ ଯୁଦ୍ଧ ସମୟରେ ସୃପତି ନାମକ ରାଜା ନିଜ ସେନା ବଳ ସହିତ ହିମାଳୟକୁ ପଳାୟନ କରିଥିଲେ ଏବଂ ସେଠାରେ ବସତି ସ୍ଥାପନ କରିଥିଲେ । ସେହି ସମୟଠାରୁ ଏହି ଦୁଇଦେଶ ମଧ୍ୟରେ ସମ୍ପର୍କ ଗଢ଼ି ଉଠିଥିଲା । ଏହା ବ୍ୟତୀତ ସମସ୍ତ ଐତିହାସିକମାନଙ୍କର ଗୋଟିଏ ମତ ଅଛି ଯେ ତିବ୍ବତର ପ୍ରଥମ ରାଜା ଙ୍ଖାଠି ଚନ୍‌ପୋ ଭାରତର ଲିଚ୍ଛାବୀ ରାଜବଂଶର ଥିଲେ । ଏହା କେବଳ ଐତିହାସିକମାନଙ୍କ ମତ ନୁହେଁ, ଏହା ଏକ ପାରମ୍ପରିକ ମତ ମଧ୍ୟ ।

ତିବ୍ବତର ୩୩ତମ ସମ୍ରାଟ ସୋଙ୍‌ଗନ ଗାମ୍ପୋଙ୍କ ରାଜ୍ୟ ଅଭିଷେକ ପରେ ଏହି ଦୁଇଦେଶ ମଧ୍ୟରେ ସମ୍ପର୍କ ଅତ୍ୟନ୍ତ ଦୃଢ଼ ହୋଇଥିଲା । ସମ୍ରାଟ ସୋଙ୍‌ଗନ ଗମ୍ପୋ ଏପରି ଏକ ରାଷ୍ଟ୍ରର ପରିକଳ୍ପନା କରିଥିଲେ ଯାହାକି ରାଜନୈତିକ, ଆର୍ଥିକ, ସାମାଜିକ ଏବଂ ସାଂସ୍କୃତିକ ଦୃଷ୍ଟିରୁ ପରିପୂର୍ଣ୍ଣ ହୋଇଥିବ । ଏହି ଲକ୍ଷ୍ୟ ପୂରଣ କରିବା ପାଇଁ ସେ ବୌଦ୍ଧଧର୍ମ, ସଂସ୍କୃତି ଏବଂ ଶିକ୍ଷାକୁ ଚୀନ କିମ୍ବା ନେପାଳ ମାଧ୍ୟମରେ ପ୍ରାପ୍ତ ନ କରି ତା'ର ମୂଳ ସ୍ରୋତ, ଅର୍ଥାତ ଭାରତରୁ ହିଁ ଗ୍ରହଣ କରିବାକୁ ଉଚିତ୍ ମନେ କରିଥିଲେ । ଏହି କାର୍ଯ୍ୟ ପାଇଁ ସେ ତାଙ୍କର ସବୁଠାରୁ ପ୍ରଭାବଶାଳୀ ମନ୍ତ୍ରୀ ସମ୍ଭୋଟଙ୍କୁ ଭାରତ ପଠାଇ ବୌଦ୍ଧଧର୍ମର ଭାଷା, ଧର୍ମ, ଦର୍ଶନ ଓ ସଭ୍ୟତା ବିଷୟରେ ଅଧ୍ୟୟନର ଦାୟିତ୍ୱ ଦେଇଥିଲେ । ସମ୍ଭୋଟ୍ ମଧ୍ୟ ସମ୍ରାଟଙ୍କ ନିର୍ଣ୍ଣୟକୁ ନ୍ୟାୟର ସହିତ ମାନି ଭାରତରେ ରହି ଆଚାର୍ଯ୍ୟ ଲିପିକାର, ଦେବ ବିଦ୍ୟାସିଂହ ଆଦି ଅନେକ ପଣ୍ଡିତମାନଙ୍କଠାରୁ ବ୍ୟାକରଣ ତଥା ଲିପି ସମ୍ବନ୍ଧରେ ଅଧ୍ୟୟନ କରିଥିଲେ । ସମ୍ଭୋଟଙ୍କର ଲିପି ତଥା ବ୍ୟାକରଣ ସହିତ ତିବ୍ବତର ରାଜନୈତିକ, ସାଂସ୍କୃତିକ ତଥା ସାମାଜିକ କ୍ଷେତ୍ରରେ ଏକ ନୂତନ ଯୁଗ ଆରମ୍ଭ ହୋଇଥିଲା । ତେଣୁ ଭଗବାନ ବୁଦ୍ଧଙ୍କ ପରିନିର୍ବାଣର ପ୍ରାୟ ୧୨୦୦ ବର୍ଷପରେ ବୌଦ୍ଧଧର୍ମ ହିମାଳୟ ପର୍ବତମାଳା ପାର କରି ୭ମ ଶତାବ୍ଦୀରେ

ତିବ୍ବତରେ ପହଞ୍ଚିଲା । ଏହାର ଚୁମ୍ବକୀୟ ଶକ୍ତି ଦ୍ୱାରା ତିବ୍ବତର ଜୀବନଧାରା ବୌଦ୍ଧଧର୍ମର ରଙ୍ଗରେ ମିଶିଗଲା । ସମାଜ, ରାଜନୀତି, ଶିକ୍ଷା, କଳା, ସଙ୍ଗୀତ ସବୁକିଛି ବୌଦ୍ଧଧର୍ମ ଅନୁସାରେ ନିୟନ୍ତ୍ରିତ ଏବଂ ନିର୍ଦ୍ଦେଶିତ ହୋଇ ଚାଲିଲା । ଭଗବାନ ବୁଦ୍ଧଙ୍କ ଶିକ୍ଷା ତିବ୍ବତ ଜନ-ସମୂହମାନଙ୍କ ପାଇଁ ଶାନ୍ତି, ସୁଖ ଏବଂ ପୂର୍ଣ୍ଣତାର ଆଧାର ହୋଇଗଲା । ବୌଦ୍ଧଧର୍ମ ଓ ବିଶେଷକରି ମହାଯାନ ଏବଂ ବଜ୍ରଯାନର ସାହିତ୍ୟରାଶି ଏବଂ ଜୀବନ୍ତ ପରମ୍ପରା ଗୁଡ଼ିକ ତିବ୍ବତରେ ଅତ୍ୟନ୍ତ ଭାବେ ପ୍ରଭାବ ପକାଇଲା ।

ବହୁଦିନ ଧରି ସାଂସ୍କୃତିକ ଆଦାନ ପ୍ରଦାନର ଫଳସ୍ୱରୂପ ହିଁ ବୌଦ୍ଧ ଓ୍ୱଣମୟ ଗ୍ରନ୍ଥରାଶିର ଯେଉଁ ପ୍ରକାଶ ହେଲା ତାହା ବାସ୍ତବରେ ଅଦ୍‌ଭୂତ୍ ଅଟେ । ବହୁତ ଗ୍ରନ୍ଥ ଯେପରିକି ତନ୍ତ୍ର, ପ୍ରଜ୍ଞାପାରମିତା, ରତ୍ନକୂଟ, ଅବତସଂକ ମହାୟାନସୂତ୍ର, ବିନୟ ସୂତ୍ର ପ୍ରଭୃତି ପ୍ରକାଶିତ ହେଲା । ଏତଦ୍‌ବ୍ୟତୀତ ଭୋଟ ଦେଶରେ ବୌଦ୍ଧଧର୍ମର ପ୍ରଭାବରେ ମୋଗଲ ଶାସକ ଅଲତାନ୍ ଖାଁ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ଏବଂ ଏହା ସହିତ ବହୁ ବିଦ୍ୱାନ ଏହା ମାନିଥିଲେ କି ତେଙ୍ଗିନ୍ ଖାଁଙ୍କ ପୁତ୍ର କୁବଲଇ ଖାଁ ଭୋଟ ଉପରେ ବିଜୟ ପ୍ରାପ୍ତ ପରେ ବିହାରର ସ୍ୱାମୀଙ୍କ ମାଧ୍ୟମରେ ସ୍ୱୟଂ ବୌଦ୍ଧ ହେଲେ ।

ବୌଦ୍ଧଧର୍ମର ଗୋଟିଏ ଚାସୀର ଭାବ ଅଛି । ତାହା ଅଟେ ନିଜର ସନ୍ତତିରୁ ଗୋଟିଏକୁ ଦେଶର ଆଧ୍ୟାତ୍ମିକ ଦାୟୀତ୍ୱ ପାଇଁ ଅର୍ପଣ କରନ୍ତି । ତିବ୍ବତରେ ଦୁଇପ୍ରକାରର ଲାମା ଅଛନ୍ତି ଗୋଟିଏ ସାମାନ୍ୟ ଭିକ୍ଷୁ ଅନ୍ୟଟି ଅବତାରୀ ଲାମା । ବଞ୍ଚିଥିବା ଲାମାଙ୍କୁ ସମସ୍ତେ ଶ୍ରେଷ୍ଠ ମାନନ୍ତି । ଏହାଙ୍କୁ ମଞ୍ଜୁଶ୍ରୀ, ଅବଲୋକିତେଶ୍ୱର ଏବଂ ଗୃହରାଜ ବୋଧିସତ୍ତ୍ୱରେ ସମ୍ବୋଧିତ କରାଯାଏ । ଅବଲୋକିତେଶ୍ୱର ବୋଧିସତ୍ତ୍ୱ ଯେଉଁ ପର୍ବତରେ ବାସ କରନ୍ତି ତାହାକୁ ପୋତଲକ କୁହାଯାଏ । ହାଲସାରେ ଦଲାଇଲାମାଙ୍କ ମହଲକୁ ମଧ୍ୟ ପୋତଲା କୁହାଯାଏ ।

ଭୋଟ ବିଦ୍ୱାନମାନେ ବହୁତ ଭାରତୀୟ ବୌଦ୍ଧନ୍ୟାୟ ଶାସ୍ତ୍ରୀୟ ଗ୍ରନ୍ଥ ରଚନା କଲେ ଯେମିତିକି ଭୋଟ ତ୍ରିପିଟକକୁ ଦେଖେ ସଂସ୍କରଣରେ ନ୍ୟାୟଶାସ୍ତ୍ରର ୬୬ଟି ଗ୍ରନ୍ଥ ପ୍ରାପ୍ତ ହେଲା । ଏହା ମଧ୍ୟରୁ ବହୁତ ବିସ୍ତୃତ ମଧ୍ୟ ହେଲା । ନାଗାର୍ଜୁନର ମୂଳମାଧ୍ୟମିକ କରିବା ଏବଂ ବିଗ୍ରହ ବିବର୍ତ୍ତନ, ଆର୍ଯ୍ୟ ଦେବର ଚତୁଃସଦ୍‌କ, ବସୁବନ୍ଧୁର ବିଂଶତିକାରିକା ବୃତ୍ତି ତଥା ତ୍ରିସତକାରିକା ବୃତ୍ତି ଦିଣ୍ଡନାଗର ପ୍ରମାଣ ସମୁଚୟ ଏବଂ ଆଲମ୍ବନ ପରୀକ୍ଷା, ଧର୍ମବିରୀର ପ୍ରମାଣ କିନିଞ୍ଚୟ ତଥା ହେତୁବିନ୍ଦୁ, ଶାନ୍ତିରକ୍ଷିତର ତତ୍ତ୍ୱ ସଂଗ୍ରହ ଏବଂ ମଧ୍ୟମ କାଳଂକାର କମଳସିଲର ତତ୍ତ୍ୱସଂଗ୍ରହ ପଞ୍ଜିକା ଏବଂ ମଧ୍ୟମକାଳଂ କାର ପଞ୍ଜିକା ଆଦିର ଗହନ ଅଧ୍ୟୟନ ଭୋଟ ଦେଶରେ ହେଲା । ଏଣୁ ବୌଦ୍ଧଧର୍ମ-ତିବତି ଭାଷା, ଲିପି ଏବଂ ସାହିତ୍ୟର ଯେଉଁ ଉପକାର ହେଲା ତାହା ଅଭିନନ୍ଦନୀୟ ଅଟେ ।

ବୌଦ୍ଧଧର୍ମର ବ୍ୟାପକ ପ୍ରଚାର ପାଇଁ ତିବ୍ବତରେ କିଛି ମହାନ ଏବଂ ଧର୍ମପ୍ରାଣ ଶାସକଙ୍କ ଯୋଗଦାନ ମଧ୍ୟ ରହିଛି । ୭୯୦ଖ୍ରୀ:ରେ ୩୭ତମ ଶାସକ ଠ୍ରିସୋଣ ଦେଓତ୍‌ସଂନ ଏବଂ ୮୬୬ଖ୍ରୀ: ୪୦ତମ ଶାସକ ରଂଲପା-ଏଚନଙ୍କ ଶତଚେଷ୍ଟାର ଫଳ ଆଜି ତିବ୍ବତର ନାଗରିକମାନେ ଉପଲବ୍ଧ କରୁଛନ୍ତି । ଏହି ସମ୍ରାଟଙ୍କ ସମୟରେ ଅନେକ ଭବ୍ୟ ଏବଂ କଳାତ୍ମକ ମନ୍ଦିର ଓ ମଠର ସ୍ଥାପନା କରାଗଲା । ବୌଦ୍ଧଧର୍ମ ଦର୍ଶନର ଆଧାର ଉପରେ ଜନସାଧାରଣଙ୍କ ଆଚରଣ ସାହିତ୍ୟରେ ରଚନା ହେଲା । ଭାରତରୁ ନାଳନ୍ଦା ବିଶ୍ୱବିଦ୍ୟାଳୟର ବିଦ୍ୱାନ, ଯୋଗୀ ଓ ତାନ୍ତ୍ରିକମାନେ ତିବ୍ବତର ଯାତ୍ରାକୁ ଏବଂ ବୌଦ୍ଧଧର୍ମକୁ ସୁଦୃଢ଼ ଆଧାର ଉପରେ ପ୍ରତିଷ୍ଠିତ କଲେ । ଏହାମଧ୍ୟରୁ ଶାନ୍ତରକ୍ଷିତ, ପଦ୍ମସମ୍ଭବ ଏବଂ ବିମଳମିତ୍ରଙ୍କ ନାମ ଉଲ୍ଲେଖନୀୟ । ଏହି ସମୟରେ ୩ଟି ରାଜକୀୟ ସଂସ୍କୃତ ଶବ୍ଦକୋଷର ନିର୍ମାଣ କରାଯାଇଥିଲା ଯାହାକି ଲଘୁ, ମଧ୍ୟମ ଏବଂ ବୃହତ ଉତ୍ପତି ନାମରେ ପରିଚିତ । ଏହି ସବୁଥିରେ ବୁଦ୍ଧବଚନ ବ୍ୟତୀତ ଆୟୁର୍ବେଦ, ଶିଳ୍ପ, ଜ୍ୟୋତିଷ, ବ୍ୟାକରଣ ଆଦି ଅନେକ ବିଷୟରେ ପର୍ଯ୍ୟାପ୍ତ ମାତ୍ରାରେ ବ୍ୟାଖ୍ୟା କରାଯାଇଛି । ତିବ୍ବତ ଭାଷାରେ ଉପଲବ୍ଧ ବୌଦ୍ଧ ସାହିତ୍ୟରେ ମୁଖ୍ୟତଃ ଧର୍ମ, ଇତିହାସ, କାବ୍ୟ, କଳା-ସଙ୍ଗୀତ ଏବଂ ନୃତ୍ୟ ଆଦି ବିଷୟରେ ବ୍ୟାପକ ବର୍ଣ୍ଣନା କରାଯାଇଛି ।

ଲୌକିକ ବିଶ୍ୱର ବିବେଚନା କରିବା ବାଲା ଗ୍ରନ୍ଥରେ ଏକ ବିଶାଳ ଭଣ୍ଡାର ମଧ୍ୟ ତିବ୍ବତ ଭାଷାରେ ଉପଲବ୍ଧ ଅଟେ । କାନୁନ୍, ରାଜନୀତି, ଚିକିତ୍ସା, ଗଣିତ, ଭୂଗୋଳ, ଶିଳ୍ପ ଆଦି ଲୌକିକ ଜୀବନରେ ବିଭିନ୍ନ ପକ୍ଷର ବିସ୍ତୃତ ବିବେଚନା କରିବା ଭଳି ଗ୍ରନ୍ଥ ମଧ୍ୟ ଉପଲବ୍ଧ ହୋଇଛି । ଉଦାହରଣ ସ୍ୱରୂପ ନାଗାର୍ଜୁନଙ୍କ 'ପ୍ରଜ୍ଞାଶତକ', 'ପ୍ରଜ୍ଞାଦଣ୍ଡ' ବରରୁଚିଙ୍କ 'ଶତଗାଥା' ଚାଣକ୍ୟଙ୍କ 'ଅର୍ଥଶାସ୍ତ୍ର' ତିବ୍ବତ ଭାଷାରେ ଅନୂଦିତ ହୋଇଥିଲା ଏବଂ ୫ମ ଦଲାଇଲାମା ରାଜଧର୍ମ ଉପରେ ଗ୍ରନ୍ଥରଚନା କରିଥିଲେ ।

ଏହିପ୍ରକାର ତିବ୍ବତ ଏକ ସମୃଦ୍ଧ ଏବଂ ସମଗ୍ର ସଂସ୍କୃତିର କେନ୍ଦ୍ର ହୋଇ ରହିଛି । ବୌଦ୍ଧଧର୍ମ, ଦର୍ଶନ, କଳା, ସାହିତ୍ୟକୁ ଭାରତ ଦ୍ୱାରା କରି ଏବଂ ତାହାକୁ ସମ୍ବର୍ଦ୍ଧିତ କରି ତିବ୍ବତ ପରମ୍ପରାଗତ ସମ୍ପ୍ରଦାୟରେ ନିଜର ବିଶେଷ ଯୋଗଦାନ କରିଛି । ଏହି ଦୃଷ୍ଟିରେ ତିବ୍ବତକୁ ଭାରତ ମାନସ-ପୁତ୍ର କହିବା ସତ୍ୟଠାରୁ ଅନ୍ତର ନୁହେଁ ।

ଏହି ସମସ୍ତ ଐତିହାସିକ ଦୃଷ୍ଟିକୋଣରୁ ଏହା ପ୍ରକଟିତ ହୁଏ ଯେ ତିବ୍ବତବାସୀମାନଙ୍କ ମନରେ ଏପରି କୌଣସି ବାହାନା ନଥିଲା ଯେ ଏହା କୌଣସି ଦେଶର ସଂସ୍କୃତି ବା ଶିକ୍ଷାକୁ ଗ୍ରହଣ କରିବା ଉଚିତ୍ ନୁହେଁ ବରଂ ଯେକୌଣସି ଭଲ କଥା ବା ଶିକ୍ଷା ତାଙ୍କ ସାମ୍ନାକୁ ଆସୁଥିଲା ସେ ତାହାକୁ ଗ୍ରହଣ ଅର୍ଥାତ ସ୍ୱୀକାର କରିଚାଲିଥିଲେ । ଭାରତବର୍ଷକୁ ତିବ୍ବତବାସୀମାନେ ଗୁରୁବୋଲି ମାନନ୍ତି । ଯଦିଓ

ରାଜନୀତି ଓ ଭୌଗୋଳିକ ଦୃଷ୍ଟିରୁ ଭାରତ ଓ ତିବ୍ବତ୍ ଅଲଗା ଅଟନ୍ତି କିନ୍ତୁ ସାଂସ୍କୃତିକ ଦୃଷ୍ଟିରେ ତିବ୍ବତ ଭାରତର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏହା କେହି ଅସ୍ୱୀକାର କରିପାରିବେ ନାହିଁ ।

ଗବେଷକ, ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ
ସର୍ଦ୍ଦାରପଟେଲ ହଲ କଂପ୍ଲେକ୍ସ, ଭୁବନେଶ୍ୱର-୯

**ସହାୟକ ସୂଚୀ :**

୧) ତିବ୍ବତ : ସାଂସ୍କୃତିକ ସଂଗମ ଏବଂ ଆଧ୍ୟାତ୍ମିକ ଉତ୍କର୍ଷର ଭୂମି
ପ୍ରୋ - ଦେବୀପ୍ରସାଦ ଚଟ୍ଟୋପାଧ୍ୟାୟ
୨) ଭାରତ ଏବଂ ତିବ୍ବତ ଏକ ସାଂସ୍କୃତିକ ପର୍ଯ୍ୟାଲୋଚନା
ପ୍ରୋ - ରାମଶଙ୍କର ତ୍ରିପାଠୀ
୩) ତିବ୍ବତ ଏବଂ ଭାରତକେ ସାଂସ୍କୃତିକ ସମ୍ବନ୍ଧ
ପେଂପା ଦୋର୍ଜେ
୪) ତିବ୍ବତ ରାଷ୍ଟ୍ର ଏକ ସଚାୟୀ
ଓ୍ୱଣ୍ଡୁବ୍ ଦୋର୍ଜେ ନେଗୀ

"Is Tibet lost forever ? No. A thousand times No. Tibet will not die because there is no death for the human spirit"

- Jayaprakash Narayan

# ତିବ୍ବତୀୟ ଭାଷା ଓ ସଂସ୍କୃତ

ଡକ୍ଟର ଦେବାଶିଷ ମହାପାତ୍ର

ତିବ୍ବତର ପ୍ରାଚୀନ ନାମ - 'ଟେରା ଇନ୍‌କୋଗ୍ନିଟା' । ଏହାର ଅର୍ଥ ଅଜଣା ଜାଗା । ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ 'ବିଶ୍ୱର ଛାତ' ଭାବେ ବିବେଚିତ ତିବ୍ବତର ଇତିହାସ ଓ ଭୂଗୋଳ ଭଳି ଭାଷା ଓ ସଂସ୍କୃତି ବେଶ୍ ବୈଚିତ୍ର୍ୟପୂର୍ଣ୍ଣ । ଭାଷାବିଜ୍ଞାନୀଙ୍କ ମତରେ, ତିବ୍ବତୀୟ ଭାଷା ତିବ୍ବତୋ-ବର୍ମନ୍ ଭାଷା ପରିବାର ଅନ୍ତର୍ଭୁକ୍ତ । ତିବ୍ବତୀୟ ଭାଷାର ଗଠନ ଓ ବ୍ୟବହାରରେ ବୈଶିଷ୍ଟ୍ୟ ରହିଛି । ଉଭୟ ଗଠନ ଓ ବ୍ୟବହାର ଦୃଷ୍ଟିରୁ ତୁଳନା କଲେ ଚୀନା ଭାଷାଠାରୁ ତିବ୍ବତୀୟ ଭାଷାର ପୃଥକତା ବାରି ହୋଇପଡ଼େ । ଭାଷାତାତ୍ତ୍ୱିକ ଗବେଷଣାରୁ ଜଣାଯାଇଛି ଯେ ତିବ୍ବତୀୟ ଭାଷାର ଶହେରୁ ଊର୍ଦ୍ଧ୍ୱ ଉପଭାଷା (Dialect) ରହିଛି । ଅବଶ୍ୟ ତନ୍ମଧ୍ୟରୁ ଉ-ସାଙ୍ଗ୍ ବହୁଳ ବ୍ୟବହୃତ ଉପଭାଷା, ଅଧୁନା ତିବ୍ବତୀୟ ଭାଷାରେ ବ୍ୟବହାର କରାଯାଉଥିବା ଲିପି (Script) ସପ୍ତମ ଶତାବ୍ଦୀର ବ୍ରାହ୍ମୀ ଲିପି ଆଧାରିତ । ଭାରତବର୍ଷରେ ତତ୍କାଳୀନ ଗୁପ୍ତବଂଶର ଶାସନକାଳରେ ଦ୍ୱିପାକ୍ଷିକ ସଂପର୍କ ବୃଦ୍ଧି ପାଇଁ ଏହି ଲିପି ତିବ୍ବତକୁ ଏକ ଅନନ୍ୟ ଅବଦାନ ଥିଲା । ଏହି ଲିପିର ଓଡ଼ିଆ ଲିପି ସହିତ ସାମଞ୍ଜସ୍ୟ ଅଛି । ଏହା ଓଡ଼ିଶାରୁ ତିବ୍ବତ ଯାଇଥିଲା । ଇତିହାସରୁ ଜଣାଯାଏ, ମାତ୍ର ତେର ବର୍ଷ ବୟସରେ ତିବ୍ବତର ଶାସନଭାର ଗ୍ରହଣ କରିଥିବା ସଙ୍ଗ୍‌ସେନ୍ ଗାମ୍ପୋଙ୍କ ଶାସନକାଳରେ ତିବ୍ବତୀୟ ଭାଷାର ଲିପି ବିକଶିତ ହୋଇଥିଲା । ସମ୍ରାଟ ସଙ୍ଗ୍‌ସେନ୍ ତାଙ୍କ ମନ୍ତ୍ରୀ ଥୋନ୍-ମି ସାମ୍ଭୋଟାଙ୍କ ନେତୃତ୍ୱରେ ଏକ ଷୋହଳଜଣିଆ ପ୍ରତିନିଧିଦଳକୁ ସଂସ୍କୃତ ଶିକ୍ଷା ଉଦ୍ଦେଶ୍ୟରେ ଭାରତକୁ ପଠାଇଥିଲେ । ତେବେ ଥୋନ୍-ମି ସାମ୍ଭୋଟା ସଂପୂର୍ଣ୍ଣ ଶିକ୍ଷା ଲାଭ ପୂର୍ବରୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । ତିବ୍ବତକୁ ବାହୁଡ଼ିବା ପରେ ସେ ତିବ୍ବତୀୟ ଭାଷା ପାଇଁ ଗୁପ୍ତବ୍ରାହ୍ମୀ ଲିପିର ଅଳଙ୍କରଣ କରିଥିବାର ଜଣାଯାଏ ।

ସପ୍ତମ ଶତାବ୍ଦୀରେ ତିବ୍ବତୀୟ ଲିପିରେ ଲେଖାଯାଇଥିବା ତିବ୍ବତୀୟ ଭାଷାର କିଛି ନଥି ମିଳୁଥିଲେ ହେଁ ତ୍ରୟୋଦଶ ଶତାବ୍ଦୀରେ ଲିଖିତ ବହୁ ବୌଦ୍ଧ ସାହିତ୍ୟ ତିବ୍ବତୀୟ ଭାଷାର ବିକଶିତ ରୂପର ପ୍ରମାଣ ଦିଏ । ତିବ୍ବତୋ-ବର୍ମନ୍ ଭାଷା ପରିବାରରେ ପ୍ରାୟ ତିନିଶହ ଭାଷା ଅନ୍ତର୍ଭୁକ୍ତ, ଯେଉଁଥିରେ ବର୍ମୀୟ ଓ ତିବ୍ବତୀୟ ଭାଷା ଦୁଇ ପ୍ରମୁଖ ସଦସ୍ୟ । ମିୟାଁମାର (ବର୍ମା), ଥାଇଲାଣ୍ଡ, ଭିଏତ୍‌ନାମ, ଲାଓସ୍, ଚୀନ୍, ଭାରତ ଓ ତିବ୍ବତରେ ବ୍ୟବହାର ହେଉଥିବା

ଭାଷା ତିବ୍ବତୋ-ବର୍ମନ୍ ଭାଷା ପରିବାରର ସଦସ୍ୟ । ମିୟାଁମାରରେ ସରକାରୀ ଭାଷାଭାବେ ପ୍ରଚଳିତ ବର୍ମୀୟ ଭାଷାର ନିଜସ୍ୱ ଲିପି ରହିଛି । ଏହା ମଧ୍ୟ ଏକ ପ୍ରାଚୀନ ଭାଷା । ଏକାଦଶ ଶତାବ୍ଦୀରେ ବର୍ମୀୟ ଲିପିରେ ଲିଖିତ ବର୍ମୀୟ ଭାଷାର ନଥି ଏହାର ପ୍ରମାଣ ପ୍ରଦାନ କରେ । ବର୍ମୀୟ ଭାଷାରେ ମଧ୍ୟ ତିବ୍ବତୀୟ ଭାଷା ଭଳି ଶହେରୁ ଊର୍ଦ୍ଧ୍ୱ ସ୍ଥାନୀୟ ଭାଷା (Local Language) ଓ ଉପଭାଷା (Dialect) ଥିବାର ଜଣାଯାଏ । ଏଥିରେ କାରେନ୍, ସାନ୍, ଆରକାନୀୟ, ସିନ୍, ଜିଙ୍ଗପୋ, ଲୁ, ପରଉକ୍ ପ୍ରମୁଖ ବହୁଳ ବ୍ୟବହୃତ, ମାନ୍ୟତା ପ୍ରାପ୍ତ । ତିବ୍ବତୀୟ ଭାଷା ମୁଖ୍ୟତଃ ତିବ୍ବତରେ ବ୍ୟବହାର ହେଉଥିବାର ଦୃଷ୍ଟିଗୋଚର ହେଲେ ମଧ୍ୟ ନେପାଳରେ ଏହାର ବ୍ୟବହାର ବେଶ୍ ଆଖିଦୃଶିଆ । ସଂସ୍କୃତ ଭାଷାରେ ତିବ୍ବତକୁ 'ଭୋଟା' (ଭୋଟ) ଏବଂ ତିବ୍ବତୀୟ ଭାଷାକୁ 'ଭୋଟିଆ' (ଭୋଟିଆ) କୁହାଯାଉଥିବାବେଳେ ମଙ୍ଗୋଲିଆର 'ଥୁବେତ୍', ଚୀନ୍‌ର 'ଥୁପାଂ', ଥାଇଲ୍ୟାଣ୍ଡର 'ଥିବେତ୍' ଏବଂ ଆରବର 'ଥୁବାତ୍' ସହ 'ତିବ୍ବତ' ଶବ୍ଦର ସାମଞ୍ଜସ୍ୟ ଥିବା ଭାଷାତାତ୍ତ୍ୱିକ ଗବେଷଣାରୁ ଜଣାପଡ଼େ । ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ ଚୀନ, ଭାରତ, ନେପାଳ, ଭୁଟାନ ଓ ମିୟାଁମାର୍‌କୁ ସ୍ପର୍ଶ କରୁଥିବା ତିବ୍ବତର ଭାଷାରେ ଧ୍ୱନିତତ୍ତ୍ୱ (Phonology) ଓ ରୂପତତ୍ତ୍ୱ (Morphology)ର ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ଭାଷାର ଗଠନ (Structure) ଓ ବ୍ୟବହାର (Function) ଦୃଷ୍ଟିରୁ ଚୀନା ଭାଷାଠାରୁ ଅଲଗା ବାରିହୋଇପଡୁଥିବା ତିବ୍ବତୀୟ ଭାଷା, ସମଗ୍ର ତିବ୍ବତୋ-ବର୍ମନ୍ ଭାଷା ପରିବାର (Tibeto-Burman Language Family)ର ଭାଷା ସମୂହରେ ଧ୍ୱନିତତ୍ତ୍ୱ ଓ ରୂପତତ୍ତ୍ୱ ଦୃଷ୍ଟିରୁ ବୈଶିଷ୍ଟ୍ୟପୂର୍ଣ୍ଣ । ଭାଷା ଭଳି ତିବ୍ବତୀୟ ସଂସ୍କୃତି ମଧ୍ୟ ବର୍ଣ୍ଣାଢ଼୍ୟ । ତିବ୍ବତୀୟ ସଂସ୍କୃତିକୁ ଅନୁଧ୍ୟାନ କଲେ ହୃଦ୍‌ବୋଧ ହୁଏ, ସଂସ୍କୃତି ପୁରୁଷାନୁକ୍ରମିକ ଭାବରେ ଗୋଟିଏ ଜାତି ବଞ୍ଚିବାର ଧାରା । ସଂସ୍କୃତି ଗୋଟିଏ ଜାତିର ପ୍ରାଣବାୟୁ । ସଂସ୍କୃତି ଗୋଟିଏ ଜାତିର ମାନସିକ ଉତ୍କର୍ଷତାର ପରିଚାୟକ । ସଂସ୍କୃତି ମାଧ୍ୟମରେ ଜାତିର ପ୍ରାଣସ୍ପନ୍ଦନକୁ ଅତିନିବିଡ଼ ଭାବରେ ଅନୁଭବ କରାଯାଇଥାଏ । ସମଗ୍ର ବିଶ୍ୱକୁ ଶାନ୍ତି ଓ ସଂହତିର ଆଲୋକ ଦେଖାଇଥିବା ଭଗବାନ ବୁଦ୍ଧଙ୍କ ବାଣୀ ଓ ଆଦର୍ଶକୁ ସଂପତ୍ତି ମନେ କରୁଥିବା ତିବ୍ବତୀୟ ଭାଷାଭାଷୀଙ୍କ ସଂସ୍କୃତି ସଂହତି ଓ ସଂପର୍କର ବାର୍ତ୍ତାଦିଏ । ତିବ୍ବତୀୟ ସଂସ୍କୃତିରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଏକ ପ୍ରମୁଖ ପ୍ରସଙ୍ଗ । ଜାତି-ଧର୍ମ-ବର୍ଣ୍ଣ-ଭାଷା ନିର୍ବିଶେଷରେ ଅନ୍ୟକୁ ଆପଣେଇନେବା ତିବ୍ବତୀୟ ସଂସ୍କୃତିର ଏକ ବୈଶିଷ୍ଟ୍ୟ । ନୃତ୍ୟ, ଗୀତ, ବାଦ୍ୟ ସହ ସାଂସ୍କୃତିକ ସମନ୍ୱୟ ପାଇଁ ସେମାନେ ସର୍ବଦା ତତ୍ପର । ''ମାନବ ସେବା ହିଁ ମାଧବ ସେବା'', ''ଜୀବ ସେବା କରେ ଯେଉଁ ନର, ସେହି ନର ସେବଇ ଈଶ୍ୱର'' - ଭାରତୀୟ ସଂସ୍କୃତିର ଏହି ମହନୀୟତାକୁ ତିବ୍ବତୀୟ ଭାଷାଭାଷୀ ଆପଣାର କରି ସେମାନଙ୍କ ମହାନୁଭବତାର ପରିଚୟ ଦେଇଛନ୍ତି । 'ସର୍ବେ ଭବନ୍ତୁ ସୁଖୀନଃ' ମନ୍ତ୍ରରେ ଦୀକ୍ଷିତ ତିବ୍ବତୀୟ ଭାଷାଭାଷୀଙ୍କ ସଂସ୍କୃତି

ସୂଚନା ଦିଏ ଯେ, ପୂର୍ଣ୍ଣତା ଦିଗରେ ଅଗ୍ରସର ହେବାର ସାଧନା ହିଁ 'ସଂସ୍କୃତି' । ତିବ୍ବତୀୟ ସଂସ୍କୃତିର ଅନ୍ତଃସ୍ୱର ହେଉଛି ଆଧ୍ୟାତ୍ମିକତା । ତିବ୍ବତୀୟ ସଂସ୍କୃତିର ମୂଳମନ୍ତ୍ର ହେଉଛି ଉଦାରତା, ନୈତିକତା ଏବଂ ସମନ୍ୱୟ, ତିବ୍ବତର ଭୌଗୋଳିକ ପରିସ୍ଥିତି ସେହି ଜାତିର ସାଂସ୍କୃତିକ ପ୍ରବାହର ହୋଇଛି ପ୍ରଧାନ ନିୟାମକ । ସଂସ୍କୃତି ହେଉଛି ସେମାନଙ୍କ ଜୀବନଧାରଣର ସର୍ବୋତ୍ତମ ରୂପ । ତିବ୍ବତୀୟ ଭାଷା ଓ ସଂସ୍କୃତି ମଧ୍ୟରେ ସଂପର୍କକୁ ଲକ୍ଷ୍ୟ କଲେ ବିଶ୍ୱର ଦୁଇ ପ୍ରମୁଖ ଭାଷାବିଜ୍ଞାନୀ ଫିସ୍‌ମ୍ୟାନ୍ ଓ ଗ୍ରୀନ୍‌ବର୍ଗ ଦେଇଥିବା ମନ୍ତବ୍ୟ ମନେପଡ଼େ । ଗ୍ରୀନ୍‌ବର୍ଗ (Greenberg) କହନ୍ତି, "The relationship between language and culture is reciprocal and they influence each other." ଅପରପକ୍ଷରେ ଫିସ୍‌ମ୍ୟାନ୍ (Fishman)ଙ୍କ ମତରେ "Language is not only part of culture but a very major and crucial part as well." ସେହିପରି ଭାରତର ଖ୍ୟାତିସଂପନ୍ନ ଭାଷାବିତ୍ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ମତରେ ଭାଷା କେବଳ ସଂସ୍କୃତିର ଅଙ୍ଗ ନୁହେଁ, ଏହା ସଂସ୍କୃତିର ବାହକ । ଅତଏବ ଏତିକି କୁହାଯାଇପାରେ ଯେ, ସ୍ୱାଧିନତା ଓ ସାର୍ବଭୌମତା ପାଇଁ ଦୀର୍ଘଦିନଧରି ସଂଗ୍ରାମରତ ତିବ୍ବତର ଭାଷା ଓ ସଂସ୍କୃତି ଯେତିକି ବୈଚିତ୍ର୍ୟପୂର୍ଣ୍ଣ ଓ ବର୍ଣ୍ଣାଢ଼୍ୟ, ସେତିକି ଶାଣିତ ।

ପ୍ଲଟ ନଂ-୫୭୦/୫, ଜଳବଙ୍ଗଳା ଛକ,
ଭୁବନେଶ୍ୱର-୭୫୧୦୦୨

(ଲେଖକ ଜଣେ ଯୁବ ଭାଷାବିଜ୍ଞାନୀ ତଥା
ଇଣ୍ଡୋ-ତିବ୍ବତ ମୈତ୍ରୀସଂଘ, ଓଡ଼ିଶା ଶାଖାର ସମ୍ପାଦକ)

# ତିବ୍ବତୀୟ ବୌଦ୍ଧଧର୍ମ ଉପରେ ଭାରତର ପ୍ରଭାବ

ବାସନ୍ତୀଲତା ସିଂ

ରାଜା ନାରଦ ଦେବଙ୍କ ରାଜତ୍ୱ କାଳରେ ବୌଦ୍ଧଧର୍ମ ତିବ୍ବତରେ ପ୍ରବେଶ କରିଥିଲା । ତିବ୍ବତୀୟ ରାଜା ନାରଦଦେବଙ୍କୁ ସ୍ରୋଙ୍ଗ୍‌ସାନ-ଗମ୍-ପୋ ମଧ୍ୟ କୁହାଯାଏ । ଯେତେବେଳେ ରାଜା ନାରଦଦେବ ନେପାଳ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କଲେ, ପରାଜୟ ଭୟରେ ନେପାଳର ରାଜା ଅଂଶୁବର ତିବ୍ବତ ରାଜାଙ୍କ ସହ ବୈବାହିତ ସମ୍ପର୍କ ସ୍ଥାପନ କଲେ ଓ ନେପାଳର ରାଜକନ୍ୟାଙ୍କୁ ତିବ୍ବତର ରାଜା ନିଜର ରାଣୀ ରୂପେ ସ୍ୱୀକାର କରିଥିଲେ । ନେପାଳର ରାଜକନ୍ୟା ଜଣେ ବୌଦ୍ଧଧର୍ମ ସମର୍ପିତା ଥିଲେ । ସେ ଅକ୍ଷୋଭ ବୁଦ୍ଧ, ମୈତ୍ରେୟ ଓ ତାରାଙ୍କ ମୂର୍ତ୍ତିକୁ ଯୌତୁକ ସ୍ୱରୂପ ଆଣିଥିଲେ । ରାଜା ନାରଦଦେବ ଏହି ମୂର୍ତ୍ତିଗୁଡ଼ିକର ସ୍ଥାପନା ନିମନ୍ତେ ଲାସାର ମଧ୍ୟଭାଗରେ ଏକ ମନ୍ଦିର ନିର୍ମାଣ କରିଥିଲେ । ଏହି ମନ୍ଦିରଟି ଜୋଖଙ୍ଗ୍ (House of Lords) ନାମରେ ପ୍ରସିଦ୍ଧ । ଏହାର ଦୁଇବର୍ଷ ପରେ ତିବ୍ବତର ରାଜା ସ୍ରୋଙ୍ଗ-ସାନ-ଗମ-ପୋ ଚୀନ୍ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ନେପାଳ ସଦୃଶ ଚୀନର ରାଜା ମଧ୍ୟ ତାଙ୍କ ଝିଅକୁ ତିବ୍ବତ ରାଜାଙ୍କ ସହ ବିବାହ କରାଇବା ପାଇଁ ନିଷ୍ପତ୍ତି ନେଲେ । ଚୀନ୍‌ର ରାଜକୁମାରୀ ମଧ୍ୟ ନେପାଳ ରାଜକୁମାରୀଙ୍କ ପରି ବୁଦ୍ଧଙ୍କ ଉପାସିକା ଥିଲେ । ସେ ତିବ୍ବତକୁ କଳା, ହସ୍ତଶିଳ୍ପ ଆଣିବା ସହିତ ସାକ୍ୟମୁନିଙ୍କ ମୂର୍ତ୍ତି ମଧ୍ୟ ଆଣିଥିଲେ । ଏହି ମୂର୍ତ୍ତିକୁ ପଦାଭିଷିକ୍ତ କରିବା ପାଇଁ ରାଜା ନାରଦଦେବ ଲାସାରେ ଅନ୍ୟ ଏକ ମନ୍ଦିର ନିର୍ମାଣ କରିଥିଲେ । ଏହା କୁହାଯାଉଅଛି କି, ଏହି ମୂର୍ତ୍ତିଟିକୁ ଚୀନ୍‌ର ରାଜା ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଭାରତର ମଗଧ ରାଜ୍ୟରୁ ନେଇ ଯାଇଥିଲେ । ରାଜାଙ୍କର ଏହି ଦୁଇ ରାଣୀଙ୍କୁ ଯଥାକ୍ରମେ ଅବଲୋକିତଙ୍କ ସଙ୍ଗୀନି ଏବଂ ଦୟାମୟୀ ଠାକୁରାଣୀ ତାରାଙ୍କର ଅବତାର ଭାବେ ଅଭିହିତ କରାଯାଇ ଅଛି । ରାଜା ନାରଦଦେବ ତାଙ୍କର ଦୁଇ ରାଣୀଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ ଓ ତିବ୍ବତରେ ଏହାର ପରିଚୟର ଆବଶ୍ୟକତାକୁ ଅନୁଭବ କରି ବୌଦ୍ଧଧର୍ମର ପ୍ରଚାର ପାଇଁ ପୂର୍ଣ୍ଣ ସହଯୋଗ ଦେଲେ । ସେ ତାଙ୍କ ପତ୍ନୀଙ୍କ ଅନୁରୋଧ କ୍ରମେ ବୌଦ୍ଧଧର୍ମ ଉପରେ ଜ୍ଞାନ ଆହରଣ କରିବା ପାଇଁ ଏବଂ ବୌଦ୍ଧଧର୍ମକୁ ପ୍ରସାର କରିବା ପାଇଁ ଯୁବକମାନଙ୍କୁ ଭାରତକୁ ପଠାଇଥିଲେ ।

ତିବ୍ବତୀୟ ଭାଷାରେ ପାଣ୍ଡୁଲିପିର ଉଦ୍ଭାବନ କରିବା ପାଇଁ ଥୋନ୍‌ମି-ସମ-ଭୋଟଙ୍କ

ସହ ଅନ୍ୟ ୧୬ ଜଣଙ୍କୁ ଭାରତକୁ ପଠାଯାଇଥିଲା । ସେମାନେ ସେଠାରେ ଆଚାର୍ଯ୍ୟ ଦେବବିତ ସିଂହ, ପଣ୍ଡିତ ଲିପିକର ଏବଂ ଲେଖନୀ କଳାରେ ଦକ୍ଷ ବ୍ୟକ୍ତି ବିଶେଷଙ୍କ ସହିତ ପଢ଼ା ଆରମ୍ଭ କଲେ । ସେତେବେଳେ ତିବ୍ବତର ଲୋକମାନଙ୍କୁ ଲେଖନୀ କଳା ଜଣାନଥିଲା । ସେମାନେ ଗ୍ରନ୍ଥ ଗୁଡ଼ିକୁ ମୌଖିକ ଭାବେ ମନେ ରଖୁଥିଲେ । ସେ ତିବ୍ବତୀୟ ଭାଷାକୁ କମାଇ ୩୪ଟି ଅକ୍ଷର, ୩୦ଟି ବ୍ୟଞ୍ଜନ ବର୍ଣ୍ଣ ଓ ୪ଟି ସ୍ୱରବର୍ଣ୍ଣ ବିଶିଷ୍ଟ ନୂତନ ଅକ୍ଷରମାଳା ଲିପି ଉଦ୍ଭାବନ କରିଥିଲେ । ଏହି ଅକ୍ଷରମାଳା ୬୦୦ / ୭୦୦ ଖ୍ରୀଷ୍ଟାବ୍ଦରେ ଭାରତରେ ପ୍ରଚଳିତ ଲିପିର ଅନୁକରଣ । ଗବେଷଣାରୁ ଜଣାଯାଏ, ଏହି ଲିପି ଓଡ଼ିଶାରୁ ତିବ୍ବତକୁ ଯାଇଥିଲା । ବୌଦ୍ଧଧର୍ମ ଏବଂ ତା ସହିତ ସମ୍ବନ୍ଧୀତ ଅନେକ ପୁସ୍ତକ ସଂସ୍କୃତ ଓ ଅନ୍ୟ ଭାରତୀୟ ଭାଷାରୁ ତିବ୍ବତୀୟ ଭାଷାକୁ ଅନୁବାଦ କରାଯାଇଥିଲା । ଏହାପରେ ରାଜା ଖ୍ରୀ-ଲଡ଼ି-ଗ୍ଲେସଗ-ବସାନ ତିବ୍ବତର ସିଂହାସନ ଆରୋହଣ କଲେ । ସେ ମୁଖ୍ୟତଃ ତିବ୍ବତରେ ବୌଦ୍ଧଧର୍ମର ପ୍ରସାର ପାଇଁ ଦାୟୀ ଥିଲେ । ତାଙ୍କୁ ବୋଧିସତ୍ତ୍ୱ ମଞ୍ଜୁଶ୍ରୀଙ୍କର ଅବତାର ଭାବେ ସମ୍ମାନିତ କରାଯାଉଅଛି । ତାଙ୍କ ରାଜତ୍ୱ କାଳରେ ସନ୍ତରକ୍ଷିତା, ପଦ୍ମସମ୍ଭବ ଓ କମଳଶୀଳଙ୍କୁ ଭାରତରୁ ତିବ୍ବତକୁ ଆମନ୍ତ୍ରିତ କରାଯାଇଥିଲା । ଯୋଗୀ ପଦ୍ମସମ୍ଭବ ୭୪୭ ଖ୍ରୀଷ୍ଟାବ୍ଦରେ ତିବ୍ବତ ଆସିଥିଲେ । ସେ ସେଠାକାର ପାରମ୍ପରିକ ଶକ୍ତି ଓ ଦୁଷ୍ଟ ଆତ୍ମାମାନଙ୍କୁ ପରାଜିତ କରିଥିଲେ । ସେ ବୌଦ୍ଧଧର୍ମର ମୌଳିକ ଶିକ୍ଷାର ପ୍ରସାର କରିଥିଲେ, ତନ୍ତ୍ର ବିଦ୍ୟାର ପ୍ରସାର କରିଥିଲେ ଏବଂ ବୌଦ୍ଧଧର୍ମର ଉନ୍ନତିକୁ ଏକ ନୂତନ ଗତି ପ୍ରଦାନ କରିଥିଲେ । ସେ ତିବ୍ବତୀୟ ବୌଦ୍ଧ ସଂଘର ସଙ୍ଗଠନ କରିଥିଲେ ଏବଂ ତାଙ୍କ ମତାନୁସାରେ ଲାସାର ସ୍ମାୟେ ବୌଦ୍ଧ ବିହାର ନିର୍ମାଣ କରାଯାଇଥିଲା । ୱାଡେଲ କହିଛନ୍ତି ଯେ, "ଏହି ବୌଦ୍ଧ ବିହାରର ଶୀର୍ଷ ଭାଗ ଚୀନ ଶୈଳୀରେ, ମଧ୍ୟଭାଗ ଭାରତୀୟ ଶୈଳୀରେ ଏବଂ ନିମ୍ନଭାଗ ତିବ୍ବତୀୟ ଶୈଳୀରେ ନିର୍ମିତ ହୋଇଥିଲା । ଆଚାର୍ଯ୍ୟ ସନ୍ତରକ୍ଷିତଙ୍କୁ ନୂତନ ବୌଦ୍ଧବିହାରର ଶ୍ରେଷ୍ଠ ଭାବେ ନିଯୁକ୍ତି କରାଯାଇଥିଲା । ଏପରିକି, ଆଜିମଧ୍ୟ ପଦ୍ମ ସମ୍ଭବ-ଗୁରୁ କିମ୍ବା ମହାଆଚାର୍ଯ୍ୟ ପଦ୍ମସମ୍ଭବ ତଥା ଗୁରୁ ରିନ୍‌ପୋଚଭାବେ ପରିଚିତ । ଏହି ମହାମାନବଙ୍କୁ ତିବ୍ବତରେ ବୌଦ୍ଧଧର୍ମର ପ୍ରଚାରକ ରୂପେ ପ୍ରଥମ ସ୍ଥାନ ଦିଆଯାଇଛି । ଗୁରୁ ଦୀପଙ୍କର ଶ୍ରୀଜ୍ଞାନ ଅତୀସ ୧୦୩୮ ଖ୍ରୀଷ୍ଟାବ୍ଦରେ ଭାରତରୁ ତିବ୍ବତକୁ ଆସିଥିଲେ । ତାଙ୍କୁ ବୈଶେଷିକ ଓ ତାନ୍ତ୍ରିକ ରୀତିର ଶ୍ରେଷ୍ଠ ଭାବେ ବିକ୍ରମଶୀଳ ବୌଦ୍ଧବିହାରରେ ନିଯୁକ୍ତି ଦିଆଯାଇଥିଲା । ସେ ବୌଦ୍ଧଧର୍ମ ଶିକ୍ଷା ସମ୍ବନ୍ଧୀୟ ଏକ କ୍ଷୁଦ୍ର ଗ୍ରନ୍ଥ ସଂସ୍କୃତ ଭାଷାରେ ରଚନା କରିଥିଲେ, ଯେଉଁଥିରେ କି ସେ ତନ୍ତ୍ରବାଦର କାଳଚକ୍ରଯାନ ପଦ୍ଧତି ଉପରେ ଏକ ବ୍ୟାଖ୍ୟା ମଧ୍ୟ ପ୍ରସ୍ତୁତ କରିଥିଲେ ଏବଂ ତିବ୍ବତ ପାଇଁ ଏକ ନୂତନ ପଞ୍ଜିକା ମଧ୍ୟ ପ୍ରସ୍ତୁତ କରିଥିଲେ । ଆଜି ପର୍ଯ୍ୟନ୍ତ ମଧ୍ୟ ତାଙ୍କୁ ତିବ୍ବତରେ ଲୋକମାନେ ଜୀବନ୍ତ ପ୍ରତିମାର ମାନ୍ୟତା ଦେଇ ପୂଜା କରୁଛନ୍ତି । ସେ ସଂସ୍କୃତ

ଭାଷାକୁ ତିବ୍ବତୀୟ ଭାଷାରେ ରୂପାନ୍ତରିତ କରି ସେ ସମୟର ତିବ୍ବତୀୟ ଧର୍ମରେ ଏକ ବିପ୍ଳବ ସୃଷ୍ଟି କରିଥିଲେ । ପଦ୍ମସମ୍ଭବ ପ୍ରାଚୀନ ବୌଦ୍ଧଧର୍ମର ରୂପ ସ୍ୱରୂପ ମନ୍ତ୍ରଯାନକୁ ତିବ୍ବତକୁ ନେଇଥିଲେ, ଯେଉଁଥିରେ ତନ୍ତ୍ରଯାନ ସମ୍ବନ୍ଧୀୟ ସମସ୍ତ ତତ୍ତ୍ୱ ବିସ୍ତୃତଭାବେ ବର୍ଣ୍ଣନା କରାଯାଇଅଛି ।

ତିବ୍ବତୀୟ ବୌଦ୍ଧଧର୍ମରେ ଘଟିଥିବା ନୂତନ ବିପ୍ଳବର ନେତୃତ୍ୱ ନେଇଥିଲେ ଅତୀସ । ସେ ୧୧୦୦ ଶତାବ୍ଦୀରେ ରାଜା ୟେ-ସେସ-ହତ୍‌ଙ୍କ ଦ୍ୱାରା ବୌଦ୍ଧଧର୍ମର ପ୍ରବର୍ତ୍ତନ କରିବା ପାଇଁ ଭାରତରୁ ତିବ୍ବତକୁ ଆମନ୍ତ୍ରିତ ହୋଇଥିଲେ । ସେଠାରେ ସେ ବୌଦ୍ଧଧର୍ମର ପ୍ରବର୍ତ୍ତନ କରିଥିଲେ । ଏହାର ପରିଣାମ ସ୍ୱରୂପ ବୌଦ୍ଧଧର୍ମର ପରିବର୍ତ୍ତନ ଘଟି ଏକ ନୂତନ ବିପ୍ଳବ ସୃଷ୍ଟି ହୋଇଥିଲା । ବୌଦ୍ଧଧର୍ମର ପୁନଃ ଗଠନ କାର୍ଯ୍ୟଦ୍ୱାରା କଦମ୍ ଧର୍ମ ସମ୍ପ୍ରଦାୟ ଗଢ଼ିଉଠିଥିଲା । ଏହାକୁ ନ୍ୟାୟଙ୍ଗ୍-ମ-ପୋ କୁହାଯାଉଥିଲା । ତିବ୍ବତର ପ୍ରଥମ ଧର୍ମ ସମ୍ପ୍ରଦାୟ ନ୍ୟାୟଙ୍ଗ-ମ-ପୋ ପଦ୍ମସମ୍ଭବଙ୍କ ଦ୍ୱାରା ଉଦ୍ଭାବିତ ହୋଇଥିଲା । ଏହିପରି ଭାବରେ ତିବ୍ବତୀୟ ବୌଦ୍ଧଧର୍ମର ଉନ୍ନତି ଘଟି ନ୍ୟାୟିଙ୍ଗ-ମ-ପୋ, କର-ଗ-ୟୁଦ୍-ପ ନାମକ ବିଭିନ୍ନ ଧର୍ମ ସମ୍ପ୍ରଦାୟମାନ ଗଢ଼ିଉଠିଥିଲା ।

କ୍ୱାଟର ନଂ- F/1, Block-2
ଆର୍ଯ୍ୟବୈଦିକ କଲୋନୀ, ମାଉସୀମା ଛକ, ଭୁବନେଶ୍ୱର-୧୪

(ଲେଖିକା ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ବୌଦ୍ଧ ଓ ଜୈନ ବିଭାଗର ଉଚ୍ଚତମ ଗବେଷିକା)

# ତାଓୟାଂ ଗୁମ୍ଫା

## ନବନୀତା ଦେବସେନ୍

## ଅନୁବାଦ: ଶ୍ରୀମତୀ ବିନୋଦିନୀ ଦେବୀ

ମୁଁ ତ ଇତିହାସ ଲେଖିବାକୁ ବସିନି । ତାଓୟାଂ ଗୁମ୍ଫା ତ ନାନା ଜାଗାରେ ଅଛି । ଅଲଗା କହିବା ପରି କିଛି ବିଶେଷ ଜ୍ଞାନ ମୋର ନାହିଁ । ଲେ-ଲଦାଖର ଗୁମ୍ଫା ମଧ୍ୟ ଶୁଣିଚି କୁଆଡେ ଏଇ ପ୍ରକାରର । ବିରାଟ କାରବାର । ବାହାର ଦିଗରେ ବହୁ ଜନବସତି । ପଥରର ଘରଦ୍ୱାର, କିଲ୍ଲା ପରି ପାଚିରୀର ଭିତର ପାଖରେ ଗୁମ୍ଫାର ଚତ୍ୱର । ଚତ୍ୱରରେ ଖୁବ୍ ଦୀର୍ଘ ଗୋଟାଏ ଖୁଣ୍ଟି । ସାରା ଦେହ ନାନା ପ୍ରକାର ଉଜ୍ଜ୍ୱଳ ରଂଗରେ ରଂଗାୟିତ । ସେଥିରେ ବିରାଟ ପତାକା ଉଡୁଚି । ପାଚିରୀର ବାହାର ପଟେ ଗୋଟିଏ ଜାଗାରେ ବହୁ ଖୁଣ୍ଟିର ଜଙ୍ଗଲ ସେଥିରେ ବହୁ ଧଳା ପତାକା । ଶୁଣିଲି ଆତ୍ମାମାନଙ୍କ ଶାନ୍ତିପାଇଁ, ଆତ୍ମୀୟମାନେ ଏଗୁଡ଼ିକୁ ଦାନ କରିଚନ୍ତି । ଗୁମ୍ଫାର ବାହାରେ ବିରାଟ ଘଣ୍ଟା ଝୁଲୁଚି । ଭିତରେ ଅନେକ ତରୁଣ ଲାମା ଧର୍ମଗ୍ରନ୍ଥ ପାଠ କରୁଛନ୍ତି । ଆଶ୍ଚର୍ଯ୍ୟ ଗୋଟିଏ ଉଦାର ସ୍ୱର । ଛୋଟ ଛୋଟ ପୁଅମାନେ ପବିତ୍ର ଗୁମ୍ଫା ଘରେ ପ୍ରବେଶ ଆଗରୁ ଡେଙ୍ଗ ଡେଙ୍ଗ ଦଉଡ଼ି ଟାଣି ଘଣ୍ଟା ବଜାଇ ପ୍ରବେଶ କରୁଛନ୍ତି । ଭିତରେ ନାନା ବୟସର ଲାମା ଛାତ୍ରଙ୍କର ପଢ଼ାପଢ଼ି ଚାଲିଚି । ଆଠରୁ ଅଠରବର୍ଷ ପର୍ଯ୍ୟନ୍ତ ।

ଗୋଳମାଳ ହେଲା ପ୍ରଧାନ ଗୁମ୍ଫାର ଭିତରେ ପଶି ବୁଦ୍ଧମୂର୍ତ୍ତି ଦେଖିବାକୁ ଯାଇ ମୂଳ ବୃହତ୍ ଘରଟିର ଭିତରେ ଆଉ ଗୋଟିଏ ଛୋଟ ଘର । ସେଠି କାଚକାନ୍ଥର ସେପାଖରେ ଠାକୁର ଅଛନ୍ତି । ଅର୍ଥାତ ବୁଦ୍ଧ ମୂର୍ତ୍ତି । ମସ୍ତବଡ଼ ଗୋଟିଏ ଘୃତ ପ୍ରଦୀପ ଜଳୁଚି । ପ୍ରଦୀପଟି ପିତଳ ବୋଧହୁଏ । ଦେଖିବାକୁ ସୁନା ପରି । ସୁଭାଷ ବାବୁ କହିଲେ 'ପିଓର ଚଉଁରୀ ଘିଅ । ଗୋଟିଏ ପ୍ରକାଣ୍ଡ ରୂପା ପାତ୍ରରେ ପାଣି ରଖା ଯାଇଚି । କିନ୍ତୁ ଠାକୁର କାହାନ୍ତି ? ବେଦୀ ଉପରେ ପଦ୍ମାସନରେ ବସିଥିବା ଦୁଇଟି ଶ୍ରୀଚରଣ, ସେଇ ସାମ୍ନାରେ ଧୂପ-ଦୀପ ପାଣି । ଉଙ୍କି ଝୁଙ୍କି ଦେଇମଧ୍ୟ ବୁଦ୍ଧ ମୂର୍ତ୍ତିର ବାକୀ ଅଂଶ ଦେଖା ଗଲାନି । ସୁଭାଷବାବୁ କହିଲେ 'ସିଡ଼ି ଦେଇ... ବାକି ସବୁ ସିଡ଼ି ଦେଇ ।'' ଦୋତାଲାକୁ ଉଠି ଭୟେ ଭୟେ ଦେଖିଲି ହେଇତ... ବରାଭୟ ମୁଦ୍ରାରେ ଦକ୍ଷିଣ ହସ୍ତ ପ୍ରସାରିତ । ସ୍କନ୍ଧ କଟା ମୂର୍ତ୍ତି । ମନ ଭରିଲା ନାହିଁ ଆହୁରି ପୁଣି ସିଡ଼ି... । ସତରେ ଦୁଇଟି ଶବ୍ଦର ଅର୍ଥ ଏମିତି ଭାବରେ ବୁଝି ନ ଥିଲି ଆଗରୁ । ଗୋଟିଏ ହେଲା 'କ୍ରମଶଃ-ପ୍ରକାଶ୍ୟ' । ଆଉ ଅନ୍ୟଟି 'ଆପାଦ-ମସ୍ତକ' ।

ତାଓୟାଂ ଗୁମ୍ଫାର ବୁଦ୍ଧ, ଏଇ ଦୁଇଟି ଶବ୍ଦର ହିଁ ମୂର୍ତ୍ତିମାନ ମର୍ମାର୍ଥ । ତାଂକର ପାଦରୁ ମଥା ଅବଧି କ୍ରମେ କ୍ରମେ ପ୍ରକାଶ ପାଇଲା । ସିଡ଼ି ଦେଇ ତିନିତାଲା ଉପରକୁ ଉଠି ଦେଖିବାକୁ ପାଇଲି ତାଙ୍କର ପ୍ରସନ୍ନ ହସ ଆଉ ଅର୍ଦ୍ଧନିମ୍ଳିଳିତ ଚକ୍ଷୁ । ତିରିଶ ଚାଳିଶ ଫୁଟ ବୁଦ୍ଧ ମୂର୍ତ୍ତି ସିଂହଳରେ ମଧ୍ୟ ଦେଖିଚି । କିନ୍ତୁ ସେଇ ସବୁ ମୂର୍ତ୍ତି ମୁକୁଳା ଆକାଶର ତଳେ । 'ଶ୍ରବଣ ବେଲ୍ ଗୋଲା' ଜୈନ ମହାବୀରଙ୍କର ଦୀର୍ଘ ମୂର୍ତ୍ତିଟି ମଧ୍ୟ ଏମିତି ଗୁମ୍ଫା ଘରେ ବନ୍ଦୀ ହୋଇ ନାହାନ୍ତି । ପ୍ରଥମ ତାଲାରେ ପାଦ, ତିନିତାଲାରେ ମଥା କହିଲେ, ବ୍ରହ୍ମଦୈତ୍ୟର କଥା ହିଁ ମନେ ପଡ଼େ । ବୁଦ୍ଧଙ୍କ ମୂର୍ତ୍ତିର କଥା ନୁହେଁ । ଏପରି ଦ୍ୱିତଳ... ତ୍ରିତଳର ଗୃହସ୍ଥ ଘରୁଆ ହିସାବରେ ଏଇ ସବୁ ମୂର୍ତ୍ତି ତ ଧରାପଡ଼େ ନାହିଁ । ନା, ଏହିପରି ଭାବରେ ଦେଖିବାରେ ସୁଖ ନାହିଁ । ମନ ଭରିଲାନି । ମୂର୍ତ୍ତିର ବିରାଟତ୍ୱ ତ ହାତେ ହାତେ ଟେର୍ ପାଇଲି । କିନ୍ତୁ କାଇଁ ? ମର୍ମେ ମର୍ମେ ସିହରଣ ତ ଉଠିଲାନି । ପ୍ରତିଥର ସିଡି ଚଢ଼ିବା ସମୟରେ ଯେ ଟିକିଏ ଟିକିଏ କରି ମନଟା ଭାଂଗିଭାଂଗି ଯାଏ । ଏଇ ବିଶାଳ ପିତଳ ପ୍ରତିମାଟି ଯଦି ଅଳ୍ପ ଦୂରରୁ ଦର୍ଶକର ସାମ୍ନାରେ, ଏକ ନଜରରେ ପରିପୂର୍ଣ୍ଣ ଭାବରେ ଉଦ୍‌ଭାସିତ ହୋଇଥାନ୍ତା, ତାର ପ୍ରତିକ୍ରିୟା ଅନେକ ବେଶୀ ହୋଇଥାନ୍ତା । ଚୀନ ଯାଇନି, କିନ୍ତୁ ଜାପାନ ତ ଦେଖିଚି । 'ଓଟ'ରେ ଓ ନାରୁରେ ବିରାଟ ବିରାଟ ବୁଦ୍ଧ ମୂର୍ତ୍ତି ଗୁଡ଼ିକ ମନ୍ଦିରର ଭିତରେ ହିଁ ଥାଏ । ମସ୍ତ ଉଚ୍ଚା ଛାତର ତଳେ, ବିଶାଳ ଘରେ, ଦର୍ଶକ ମାନଙ୍କୁ ଏକ ନଜରରେ ହିଁ ଦେଖା ଦିଅନ୍ତି । ସେଇ ମହାନ୍ ମୂର୍ତ୍ତି ପ୍ରତିମା ଆଉ ତାର ଫଳ ମଧ୍ୟ ହୁଏ ଶ୍ୱାସରୁଦ୍ଧକାର ।

ଏଇ ଗୁମ୍ଫାରେ ମୂଳ ଘରଟି ଖୁବ୍ ବଡ଼ । କିନ୍ତୁ ଜାଣିନି, କାହିଁକି ବୁଦ୍ଧ ମୂର୍ତ୍ତିଟିକୁ ଏମିତି ଅଲଗା ଗୋଟିଏ ଖପୁରୀ ଘରେ ବାକ୍ସ ବନ୍ଦୀ କରି ରଖାଯାଇଚି । କଣ ପାଇଁ ଏତେ ସତର୍କତା ? ଲିଫ୍ଟ ପାଇଁ ତିଆରି ଘର ପରି ଲମ୍ବା ସରୁ ଗୋଟିଏ ପାଂକ ତିଆରି କରି ତା ଭିତରେ ମାପି ମାପି ବସା ଯାଇଚି ଏଇ ମୂର୍ତ୍ତି । କିନ୍ତୁ ଟୁକୁରା ଟୁକୁରା କରି ଦେଖାରେ; ପାଦର ପରେ ହାତ । ହାତର ପରେ ମଥା ଏଥିରେ ଅଖଣ୍ଡ ମୂର୍ତ୍ତି ଦେଖିବାର ତୃପ୍ତି ପାଇଁ ? ଇଏତ କ୍ରମିକ ଷ୍ଟ୍ରିପ୍ ପରେ ଦେବଦର୍ଶନ । ଦେଖିଲି ସତ କିନ୍ତୁ, ନ ଦେଖିଲା ପରି । ଗୋଟାଏ ଅପୂର୍ଣ୍ଣତା... ଗୋଟାଏ କ୍ଷୁଧା ତୃଷ୍ଣା ରହିଗଲା- x x x x

x x ଗୋଟାଏ ପାଖେ କାଚ ଆଲମାରୀ ଭିତରେ ସହସ୍ର ବୁଦ୍ଧମୂର୍ତ୍ତି ବୋଧହୁଏ ପିତ୍ତଳର କିନ୍ତୁ କହିଲେ ତ ସୁନାର । ତା' ପରେ ଦେଖିଲି ସେଇ ଅସାମାନ୍ୟ ଗ୍ରନ୍ଥାଗାର । ସାରା ଜୀବନରେ ଏମିତି ପୋଥି ଦେଖିଚି ଦି' ଚାରିଟା ମାତ୍ର । ଦୁଇ ହଜାରରୁ ବେଶୀ ବୌଦ୍ଧ ପୋଥି ରଖା ଯାଇଚି । ପ୍ରତ୍ୟେକଟି ହଳଦୀ କପଡ଼ାରେ ଗୁଡ଼ାଇ ଦଉଡ଼ିରେ ବନ୍ଧାଯାଇଚି ଯତ୍ନ କରି, ସବୁ ସଜଡ଼ା / ନିୟମିତ ଝଡ଼ାପୋଛା ହୁଏ । ଆମର କୌଣସି ଆଧୁନିକ ଗ୍ରନ୍ଥାଗାରରେ ଷକର ଯେଉଁ ଦୁରବସ୍ଥା । ତାଙ୍କର ନୁହେଁ । x x x x

## ଆନି ଗୁମ୍ପା

ଦୂରରେ.... ପାହାଡ଼ ଶିଖରେ... ଆଉ ଗୋଟିଏ ଧଳା ଗୁମ୍ପା ଦେଖା ଯାଉଚି । ସେଇଟା କଣ ? 'ସେଇଟା ଆନି' ଗୁମ୍ପା । ବହୁତ ଗୁଡ଼ାଏ ବାଟ ଖଚରର ପିଠିରେ ଚଢ଼ି ଯିବାକୁ ହେବ । ଗାଡ଼ି ଯାଏନି । ଚାଲିବି ହେବନି । ଉଠାଣି ତ, ପାରିବେନି ।'' 'ଆନିଗୁମ୍ପା ପୁଣି କଣ ?' 'ନେହେରୁ ଗୁମ୍ପା' ପରି କାହା ନାଁରେ ? ନାଁ ଆନି ମାନେ ସନ୍ୟାସିନୀ । ଆନି ଗୁମ୍ପା ସନ୍ୟାସିନୀ ମାନଙ୍କର ମଠ । ସେଠି ପୁରୁଷ ମାନଙ୍କର ପ୍ରବେଶ ନିଷେଧ ।

'ନାନାରି'... ଆଉ କଣ ? ଭାରତ ବର୍ଷରେ ମାତ୍ର ଦୁଇଟି ଅଛି । ଗୋଟିଏ ଏଇ ତାଓୟାଂରେ ଆଉ ଗୋଟିଏ ଧରମ ଶାଳାରେ, ଯେଉଁଠି ଦଲାଇଲାମା ଖୁବ୍ ରେୟାର ଜିନିଷ । କିଛିଦିନ ରହନ୍ତି, ଖଚର ଠିକ୍ କରି ଆପଣଙ୍କୁ ପଠାଇଦେବି ଇୟେଶି ସାଂଗରେ । ଇୟେଶି କିଏ ? ଜଣେ ଆନି... । ଆମର ବଂଧୁ । ହିନ୍ଦୀ ଜାଣେ । ତାଓୟାଂରଇ ଝିଅ । ଏଇନେ ଆସିଚି । ସତରେ ? ତାଂକ ସଂଗେ ପରିଚୟ ହେଇ ପାରିବନି । କାହିଁକି ହେବନି ? ଆଜି ହିଁ ପରିଚୟ କରେଇ ଦେବି ନ ହେଲେ । ଏଇ ତ ପାଖରେ 'ଶିଉବସ୍ତି'ରେ ତାଙ୍କର ଘର । ତା'ର ବାପ ମାଆ ଏଇଠି ଅଛନ୍ତି । ବସ୍ତିମାନେ କିନ୍ତୁ ସ୍ଲାମ ନୁହେଁ । ବସତି ।

ଫେରିବା ସମୟରେ କଥାବାର୍ତ୍ତା ହୋଇ ଆସିଲି । 'ଶିଉବସ୍ତି' ଯାଇ ଇଏଶି ଆନି ସାଙ୍ଗରେ । ସେ ଆମକୁ ଲଞ୍ଚ ପାଇଁ ନିମନ୍ତ୍ରଣ କଲା ପରଦିନକୁ । ନିଶ୍ଚୟ ଯିବି... ନିଶ୍ଚୟ ଯିବି । କି ସୁନ୍ଦରୀ ଝିଅଟି । ବୟସ ଉଣିଶୀ କୋଡ଼ିଏ । ହିନ୍ଦୀ କହିପାରେ । ଭଂଗା ଭଂଗା ଇଂରାଜୀ ମଧ୍ୟ । 'ଆମେ ସବୁ ଫିମେଲ ଆଙ୍ଗା' ଇୟେଶି ପାଟିରେ ପାଟିଏ ହସି କହିଲା । ଆମର ପାପ କରିବାର ନୁହେଁ । ଝିଅ ମାନଙ୍କର ଏମିତିରେ ବହୁତ ପାପ ହୁଏ । ଆନିହୋଇ ପାପକର୍ମ କଲେ ଆହୁରି ବେଶୀ ବେଶୀ ପାପ ହେଇଯାଏ । ଏକବାରେ ଶିଶୁର ହସ ତା ମୁହଁରେ । ସାତ ଭାଇ ଭଉଣୀଙ୍କ ମଧ୍ୟରେ ସବୁଠାରୁ ବଡ଼ ସିଏ । ମାଆ ବାପା ତାକୁ ଆନି କରି ଦେଇଛନ୍ତି । ଏଥିରେ ତା'ର କି ପୂଣ୍ୟ... ବାପା ମାଆଙ୍କର ମଧ୍ୟ ପୁଣ୍ୟ । ତିନି ପୁଅ ହେଲେ ମଝିଆଁ ପୁଅଟିକୁ ଲାମା କରିବାକୁ ହେବ । ଗୁମ୍ପାକୁ ପଠାଇବା ନିୟମ । ଝିଅମାନଙ୍କ ପକ୍ଷରେ କୌଣସି ଆଇନ୍ ନାହିଁ । ଇଚ୍ଛା... । ସଉକୀ ହେଲା ତ ଆନି ହେଲା ବହୁ ସନ୍ୟାସିନୀ ଅଛନ୍ତି । ଛୋଟ ଝିଅଟିମାନେମଧ୍ୟ ହୋଇପାରନ୍ତି । ଇୟେଶି ପନ୍ଦର ବର୍ଷ ବୟସରେ ଗୁମ୍ପାକୁ ଯାଇଚି । ଏଇନେ ତାର ବୟସ କୋଡ଼ିଏ । 'ସକାଳୁ ଉଠି ମଠରେ କଅଣ କର ?' ପୂଜା କରେ... । ପୂଜା କରିବାକୁ ହୁଏ । ନିଦରୁ ଉଠି ଓଳାଓଳି କରି ଧୂପ ଜଳାଇ ବୁଦ୍ଧଙ୍କୁ ରୂପା ଗିନାରେ ପୂଜାର ପାଣି ଦେଇ ଚା ଖାଏ । ତା' ପରେ ପୂଜା କରେ । ଯେଉଁଦିନ ବେଶୀ ବେଶୀ କାମ ଥାଏ, ସେଦିନ ପୂଜାଟା କମ୍ କମ୍ କରେ । ପୂଜା କଲାପରେ ଜଳଖିଆ ଖାଏ । କେବେ କେବେ ରୋଟି, କେବେ ଜାଉ, କେବେ ହାଲୁଆ । ବସ୍ତିକୁ ଆସି

ରେଶନ୍ ନେଇ ଯାଏ । ପେଷଣାରେ ଅଟା ପେଷେ । କାମ କଣ କମ୍ ? ସନ୍ୟାସିନୀ ମାନଙ୍କର ବହୁତ କାମ । ପଇସା ? ନାଁ ଆମ ମାନଙ୍କର ପଇସା ନାହିଁ । ପଇସା ଅନ୍ୟ ଲୋକମାନେ ଦିଅନ୍ତି । ଚାଳିଶ ଜଣ ଆନି ଗୁମ୍ଫାରେ ଥାଉ । ପନ୍ଦର ଦିନ ଅନ୍ତତଃ ତିନିଚାରି ଜଣ ମିଶି ରୋଷାଇ କରୁ । ସୁବା ସାମ ପୂଜା କରୁ । ପଢ଼ାପଢ଼ି ମଧ୍ୟ କରୁ । ପାଞ୍ଚ ଛଅଟି ଛୋଟ ଆନିଙ୍କୁ ଜଣେ ବଡ଼ ଆନି ବସାଇ ତିବ୍ବତି ଭାଷା ଶିଖାନ୍ତି । ପୋଥି ପଢ଼ିବାକୁ ଶିଖାନ୍ତି । ସାରାଦିନ ପଢ଼ା ଶୁଣା ହୁଏ ତାଙ୍କର । ହେଡ୍ ଅଛନ୍ତି ଜଣେ । ତାଙ୍କ ହାତରେ ଚାବି ଥାଏ । ଧର୍ମଗ୍ରନ୍ଥର ଚାବି । ତା'ଛଡ଼ା ଚାବି ଦେବାର କଣ ଅଛି ଆନି ମାନଙ୍କର ?

ଅବଶ୍ୟ ହଁ, ଆନିମାନଙ୍କର ଜୀବନରେ ଅନେକ କିଛି ମନା ହାୟ । ଯେମିତି ଝୁଟ ନେହିଁ ବୋଲନା, ଚୋରୀ ନେହିଁ କରନା । ସାଦି ନହିଁ କରନା, ପ୍ୟାର ନାହିଁ କରନା, ଆଦମୀ କେ ସାଥ କୁଛ ନେହି କରନା । ବାତ୍ ଉତ୍ କୁଛ ଭି ନାହିଁ । କିସିକେ ସାଥ ବାତ୍ କରନା.. ଘୁରନା ଫିରନା ତୋ' ବଦ୍‌ନାମ ହୋ ଯାଏଗା, ପ୍ୟାର କରଲିଆ ବୋଲ୍‌କେ । ତବ ଭି କୋଇ କୋଇ ଆନି ଭାଗ ଯାତା । କିସିକୋ ମିଲ୍ ଗୟା ତୋ' ଗୁମ୍ଫା ଛୋଡ଼କେ ଭାଗତା... ସାଦୀ କର ଲେତା । ଫାଇନ୍ ଦେବାକୁ ହୁଏ ଅବଶ୍ୟ । ଆନି, ଲାମା ମାନଙ୍କୁ ଚା ଖିଲାନା ପଡ଼ତା । ଯେଉଁମାନେ ପଳାନ୍ତି ନାହିଁ ତିନି ଚାରି ବର୍ଷ ସନ୍ୟାସ ନେବା ପରେ... ଭଲ କରି ଗୋଟାଏ ପୂଜା ହୁଏ । ହଜାର... ପାଞ୍ଚ ଶହ... ଶହେ ଯିଏ ଯେତିକି ପାରେ । ଆତ୍ମୀୟ ସ୍ୱଜନ ଗ୍ରାମବାସୀମାନେ ଚାନ୍ଦା କରି ପୂଜା ଦିଅନ୍ତି । ତା'ପରେ ସିଏ ଭଲ ରକମ ସନ୍ୟାସୀ ବା ସନ୍ୟାସିନୀ ହେଇ ଯାଆନ୍ତି ।

ତିନିଶତ୍ରୁ

ଏଇ ସବୁ ଗଳ୍ପ ଗୁଜବ, ଶିଉବସ୍ତିର ସୀମାରେ... ତିବ୍ବତି ଚା ଦୋକାନରେ ତିବ୍ବତି ଲୁଣ ଚା ଖାଉ ଖାଉ ଡାକ୍ତରଙ୍କ ସାଂଗରେ କାଲି ତାଓୟାଂର ଏଠି ସେଠି ଘୁରିବାର ସମୟରେ... ଚା ଘରେ ପଶି ଚା ଖାଇଚି । ସେତେବେଳେ ଶିକ୍ଷାଟି ପାଇଚି ତିବ୍ବତିଟି ସେରିମନି ଟାର କେମିତି ଧାରା । ଗୋଲ କଳା ରଂଗର କାଠର ସୁଦୃଶ୍ୟ ଗିନାର ଧାରେ ଧାରେ ପିତଳ ଆଉ ତମ୍ବାର ପାତ ବସା ଓ ରଙ୍ଗୀନ ମାଟିର କାରୁକାର୍ଯ୍ୟ । ଚା'ର ସ୍ୱାଦ ଅନାସ୍ୱାଦିତପୂର୍ବ । ମୁଁ ଢ଼ାବାରେ ଚା ଖାଇଚି । ଏକ ଦୁଇ ଫୁଟ ହେଉ ହେଉ ଗଳର ଚା । (ଛୋଟ କରି କଡ଼ା କରି) । ଚୀନା ଚା ଖାଇଚ ଜୁଇଫୁଲର ବାସ୍ନା ଭସା... ଜାପାନୀ ଚା ଖାଇଚି ଆଣ୍ଠୁମାଡ଼ି ବସି... ଦୁଇହାତରେ ଗିନା ଧରି । ସବୁଜ ରଙ୍ଗ... ବଣୁଆ ବାସ୍ନା । ଖାଇବା ମଦ୍ୟ ବନ୍ୟ (ଯେତେ କାଇଦା କରି ପରିବେଷଣ କରନ୍ତୁ) । କୁମ୍ଭମେଳାରେ ସାଧୁମାନଙ୍କ ତିଆରିପ୍ରସାଦ ଚା ମଧ୍ୟ ଖାଇଚି । ଅଳାଇଚ ଡାଲଚିନିର ବାସ୍ନା । ମଲାଇ ସ୍ୱାଦର ପାୟସ ପାୟସ । କିନ୍ତୁ ତିବ୍ବତି ଚା ସଂଗେ ତୁଳନା ହୁଏନା । ମୁହଁରେ ଛୁଆଁଉ ଛୁଆଉଁ ଚମକ ଲାଗିଲା । ମୋ'

ସାଂଗରେ କେହି ଘୋର ବିଶ୍ୱାସ ଘାତକତା କରିଚି । କାନ୍ଦ ବି ଆସିଗଲା । ଏତେ ବୀଭତ୍ସ ସ୍ୱାଦର ଚା ନିଜେ ତିଆରି କରି ଖାଇଲେ ମଧ୍ୟ ହୁଏନି । ମୁଁ ବିଶ୍ୱର ଅତି ନିକୃଷ୍ଟତମ ଚା କରାଳି ବୋଲି ଜାଣେ । ଗୋଟା ତିବ୍ଦତି ଜାତିଟା ମୋତେ ହରାଇ ଦେଇଚି କିନ୍ତୁ । ସ୍ୱେଚ୍ଛାରେ... ପୁରା ସଚେତନ, ପ୍ରୟାସରେ କେହି କେବେ ମଧ୍ୟ ଏପରି ଗୋଟିଏ ପାନୀୟ ପ୍ରସ୍ତୁତ କରିପାରେ !

ଅତିଶ ଦୀପଙ୍କର ଶ୍ରୀ ଜ୍ଞାନର ରୁଚି ଉପରେ ମଧ୍ୟ ଘୃଣା ଆସିଗଲା । ଗପ ଶୁଣିଥିଲି ତିବ୍ଦତରେ ରେକର୍ଡ଼େଡ଼୍ ପ୍ରଥମ ବଙ୍ଗଳା ଶବ୍ଦ ଗୁଡ଼ିକ ହଉଚି 'ଭାଲ ଭାଲ ଖୁବ୍ ଭାଲ' । ଏଇ ଶବ୍ଦ ଗୁଡ଼ିକ ଉଚ୍ଚାରଣ କରିଥିଲେ ଅତିଶ ଦୀପଙ୍କର ଜୀବନରେ ପ୍ରଥମ ପାତ୍ର ତିବ୍ଦତି ଚା ପାନ କରିବାରେ ପରେ ହାୟ, ଜଣେ ବଙ୍ଗାଳୀ ହୋଇ ଏଇ ସ୍ୱାଦ ଜ୍ଞାନ ? ଘୋର ଲୁଣି... ଘିଅ ଦିଆ ଆଇଁଷିଆ ଗନ୍ଧ... ତେଲ ଭସା । ଆଃ ମୁହଁରେ ଦେଉ ଦେଉ ଦେହ ଘାଣ୍ଟି ହୋଇ ବାନ୍ତି ଆସିଯାଏ । ଅନେକଟା ଅବଶ୍ୟ ଆଶାତୀତର ଧକ୍କା । ଖାଇବା ଭୀଷଣ ମୁସ୍କିଲ । ଅଥଚ ଡାକ୍ତର କହିଲେ ଚା ଶେଷ କରିବାକୁ ହିଁ ହେବ । ଫୋପାଡ଼ିବା ଅପମାନ । ଏମିତିବି ଦୋକାନରେ ମଧ୍ୟ । ଆଲୁମିନିୟମରେ ତିଆରି 'ଗୋଲାପ-ଜଳ' ଝରି ପରି ଗଢ଼ଣର ମସ୍ତବଡ଼ ସୁରାଇ ଟାଇପ୍‌ର ଚା'ଦାନି । ସେଥିରୁ ଚା ଢ଼ାଳି ଦେଉଚି ଗୋଟିଏ ରୂପସୀ ଦୁର୍ଗନ୍ଧମୟୀ ତରୁଣୀ ଭୁବନ ମୋହିନୀ ତାର ହସଟି । ଭାଷା ବୁଝୁନି... କେହି କାହାର· । ପ୍ରତି ବାର ଚା ଢ଼ାଳି ସୁରେଇଟି ମାଟିରେ ଠକ କରି ରଖୁଚି । ତା'ପରେ ଆଉ ଥରେ ଟେକି କପରେ ଦେଉଚି । ଏମିତି ନିୟମ । ଜଗତର ଯାବତୀୟ ବୀରତ୍ୱପୂର୍ଣ୍ଣ କର୍ତ୍ତବ୍ୟନିଷ୍ଠ ଦୁଃସାହସିକ କାର୍ଯ୍ୟକ୍ରମର କଥା ସ୍ମରଣ କରି କରି କାସାବିୟାଂକା ପଦ୍ୟ ମନେ ମନେ ଆବୃତ୍ତି କରି କରି ସେଇ ଗିନାଟି ଖାଲି କରିଚି । ଏମିତି, ଭିତରେ ପ୍ରଚଣ୍ଡ ଭାବରେ ଘାଣ୍ଟି ହେଇ ଉଠୁଚି । ଆପ୍ରାଣ ମନ ବଳରେ ସେଇଟା ଦମନ କରୁଚି । ଏମିତି, ମିଠା ମିଠା ହସି ଆଉ ଥରେ ମୋ ଶୂନ୍ୟ ଚା ଗିନା ପରିପୂର୍ଣ୍ଣ କରି ଦେଲା ଝିଅଟି । ଏଇ ଅମାନୁଷିକ ଦୃଶ୍ୟରେ ସତରେ ମୁଁ କାନ୍ଦି ପକେଇଲି ଏଥର । ଡାକ୍ତର ସହାନୁଭୂତିରେ ଧୀରେ ଧୀରେ କହିଲେ 'ଉପାୟ ନାହିଁ' ତିନିଥର ଖାଇବାକୁ ପଡ଼ିବ । ନିୟମ । ଏମାନେ କିନ୍ତୁ ଭୀଷଣ ସ୍ରିଚୁଆଲ ବାଦୀ । ନିୟମ ମାଫିକ ଚଳନ୍ତି । କଷ୍ଟ କରି ଖାଇ ନିଅନ୍ତୁ । ଖରାପ ତ କିଛି ନୁହେଁ । ବରଂ ଶରୀର ପକ୍ଷରେ ଭଲ । ଚମରୀ ଗାଈର ଲହୁଣୀ ଏଥିରେ ଅଛି । ଚମରୀର ଦୁଧ ଅଛି । ଲୁଣ ଆଉ ଚା ଅଛି । ଏଇ ତ ? ଖାଇ ପକାନ୍ତୁ । ଯେଉଁ ଦେଶରେ ଯାହା । ଫୋପାଡ଼ିବା ଚଳିବନି ନା । ତା ହେଲେ ଟ୍ରାଇବାଲ ମାନେ ଅପମାନିତ ହେବେ । ଦ୍ୱିତୀୟ ଗିନା ଶେଷ ହେଉ ନ ହେଉଣୁ ତୃତୀୟ ଗିନା । ତୃତୀୟ ଗିନା ଶେଷ କରିବାକୁ ଘଣ୍ଟାଏରୁ ଅଧିକ ସମୟ ଲାଗିଲା । ସାଂଗରେ ଅବଶ୍ୟ ଥିଲା ଏକ ପ୍ରକାର ଶୃଙ୍ଖଳା ନିମିକି... ତେଲିଆ

ଜିଲିପି... ଆଉ ବିସ୍କୁଟ । ସେଇ ସବୁ ଦେଇ ବ୍ରେକ୍‌ଫାଷ୍ଟ ସାରିଥିଲି... ତାଓୟାଂର ପ୍ରଥମ ପ୍ରଭାତେ । ସେଇ ପ୍ରଥମ ଲୁଣି ଚା ଖାଇ ଶିଖିଲି । ଦି' ଫୁଟ ଲମ୍ବା ପରି, କାଠର ଗୋଟିଏ ହେମଦସ୍ତା ଭିତରେ ମାଡ଼ିମାଡ଼ି ଏଇ ଚା ତିଆରି ହୁଏ । ସେ ଯନ୍ତଟା ଦେଖିବାକୁ ଭାରି ସୁଶ୍ରୀ । କିଏ କହିବ ତା ଗର୍ଭରୁ ଏମିତି ଦୁର୍ଦ୍ଦାନ୍ତ ବିସ୍ୱାଦ ବସ୍ତୁ ବାହାରିବ । ଯାହାହେଉ 'ଶିଉବସ୍ତିର' ଏଇ ଚା ଦୋକାନରେ ଆଉ ବୋକା ବନିନି । ଦିବ୍ୟ ଖାଇଲି ପ୍ରଥମ କପ୍‌ଟି । ସରି ଯିବାରୁ ଭାରି ଭୟଭୟ ଲାଗିଲା ଏ ବାବାଃ ଆହୁରି ଦି' କପ ବାକୀ – କହି ପକେଇବାରୁ ସୁଭାଷବାବୁ ହସି ହସି କହିଲେ 'କାଇଦା ଟା ଶିଖି ନିଅନ୍ତୁ । ଟିକିଏ ଖାଇ କପ୍‌ଟା ତଳେ ରଖି ଦିଅନ୍ତୁ । ତା' ହେଲେ ବି ସେମାନେ ଗିନାଟା ଭରି ଦେବେ । ଆଉ ଟିକିଏ ଖାଇ ପୁଣି ଗିନାଟା ଖାଇ ତଳେ ରଖିଦେଲେ ସେମାନେ ଆଉଥରେ ଭରିବେ । ତା'ହେଲେ ଦେଢ଼ଗିନାରେ ତିନିଥର ପରିବେଷଣର କାମଟି ସରିଯିବ । ସ୍ପିରିଟୁଆଲିଟି ମଧ୍ୟ ରହିଲା... ପେଟବି ରକ୍ଷା ପାଇଲା । ତେବେ ଦୁଇ ଏକ ଦିନ ମଧ୍ୟରେ ଅଭ୍ୟାସ ହେଇଯିବ । ଆଉ ବିସ୍ୱାଦ ମଧ୍ୟ ଲାଗିବନି । ଚମରୀ ଘିଅ ଲାଗି ଏଇ ଆଇଁଷିଆ ଗନ୍ଧଟା ହୁଏ । ମୋତେ ତ ଏବେ ତିବ୍ବତି ଚା ଖାଇବାକୁ ବେଶ୍ ଭଲ ବି ଲାଗୁଚି । ଆପଣ ହାଫ୍ ତିବ୍ବତି ହେଇ ଯାଇଚନ୍ତି ବୋଧହୁଏ ଦଶବର୍ଷ ଏଇ ତିବ୍ବତରେ ରହି ।

('ଟ୍ରକ୍ ବାହାନେ – ମ୍ୟାକ୍ ମାହନେ'ର କିଛି ଅଂଶ)

"...surely, according to principles I uphold, the last voice in regard to Tibet should be the voice of the people of Tibet and of nobody else."

- Pandit Jawaharlal Nehru

# ଓଡ଼ିଶା ଓ ତିବ୍ବତର ସାଂସ୍କୃତିକ ସଂପର୍କରେ ବୌଦ୍ଧଧର୍ମ

**(୫ମରୁ ୧୦ମ ଖ୍ରୀଷ୍ଟାବ୍ଦ)**

**ଡକ୍ଟର ରବିନାରାୟଣ ଦାଶ**

ଭାରତ ଓ ତିବ୍ବତ ମଧ୍ୟରେ ସମ୍ପର୍କର ଇତିହାସ ବହୁ ପ୍ରାଚୀନ କାଳରୁ ରହି ଆସିଚି । ଭାରତୀୟ ଧର୍ମମତ ଦ୍ୱାରା ତିବ୍ବତ ଅନେକ ଭାବରେ ପରିପୁଷ୍ଟ ହୋଇଥିବାର ପ୍ରମାଣ ବିଦ୍ୱାନମାନଙ୍କ ଦ୍ୱାରା ବ୍ୟକ୍ତ ହୋଇଥାଏ । କିନ୍ତୁ ଓଡ଼ିଶା ସହିତ ତିବ୍ବତର ସଂପର୍କ ଏତେ ଅଧିକ ପରିମାଣରେ ସୂଚୀତ ହୋଇନଥାଏ । ଏ ଦିଗରେ ସ୍ୱର୍ଗତଃ ନବୀନ କୁମାର ସାହୁ କେତେକ ନୂତନ ତଥ୍ୟ ତାଙ୍କ ରଚିତ "Buddhism in Orissa" ପୁସ୍ତକରେ ପ୍ରଦାନ କରିଛନ୍ତି । ସେଥି ମଧ୍ୟରେ ଓଡ଼ିଶା ଓ ତିବ୍ବତର ସଂପର୍କରେ ବୌଦ୍ଧଧର୍ମର ଅବଦାନ ବିଷୟରେ ଉଲ୍ଲେଖ ରହିଛି । ସେଥିରୁ ଜଣାଯାଏ ଯେ ଲାମା ତାରାନାଥ, ପାଗ୍‌-ସାମ୍‌-ଜୋନ୍‌-ଜାଙ୍ଗ ଓ ବଷ୍ଟାନ୍‌ହଃଗ୍ୟୁର ପୁସ୍ତକ ସୂଚୀ ଆଦିରୁ ଏହା ଉପଲବ୍ଧ ହୋଇଥାଏ । ଏହାବ୍ୟତୀତ ହୁଏନ୍‌ସାଂଙ୍କ ବିବରଣୀରୁ ଓଡ଼ିଶାର ବୌଦ୍ଧଧର୍ମ ବିଷୟରେ ବହୁ ତଥ୍ୟ ମିଳୁଥିଲେ ମଧ୍ୟ ସେଥିରୁ ତିବ୍ବତ ସଂପର୍କୀୟ ସୂଚନା ପ୍ରାୟ ମିଳେ ନାହିଁ ।

ଓଡ଼ିଶା ସମେତ ଭାରତର ଦକ୍ଷିଣ-ପୂର୍ବ ଅଞ୍ଚଳରେ ଅଶୋକଙ୍କ (ଖ୍ରୀ:ପୂ: ୨୭୧ ରୁ ୨୩୬) ସମୟରୁ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ହୀନଯାନ ବୌଦ୍ଧଧର୍ମର ବିଶେଷ ପ୍ରସାର ଘଟିଥିଲା । ଏହାଦ୍ୱାରା ତିବ୍ବତୀୟମାନେ ମଧ୍ୟ ପ୍ରଭାବିତ ହୋଇଥିଲେ । ଏହାର ଉଦାହରଣ ସ୍ୱରୂପ ଆମେ ଜାଣିବାକୁ ପାଇ ଥାଉ ଯେ ତିବ୍ବତର 'ପ୍ୟୁ' ମାନେ ବର୍ମା ବିଜୟ କରି ସେଠାରେ ହୀନଯାନ ବୌଦ୍ଧଧର୍ମର ପ୍ରସାର କରିଥିଲେ (Annual Report, Archaealogical Survey of Burma, 1923.) । ତାରାନାଥଙ୍କ ଲେଖା ଓ ପାଗ୍‌-ସାମ୍‌-ଜୋନ୍‌-ଜାଙ୍ଗରୁ ମଧ୍ୟ ଏହା ପ୍ରମାଣିତ ହୁଏ ।

ଓଡ଼ିଶାରେ ବୌଦ୍ଧଧର୍ମର ମହାଯାନ ଶାଖାର ପ୍ରସାର ନାଗାର୍ଜୁନଙ୍କ ଦ୍ୱାରା ହୋଇଥିଲା । ସେ ଓଡ଼ିଶାର ରାଜା ମୁଞ୍ଜଙ୍କୁ ତାଙ୍କ ପ୍ରଜାବର୍ଗଙ୍କ ସହ ବୌଦ୍ଧଧର୍ମରେ ଦୀକ୍ଷିତ କରିଥିଲେ (Life and Legends of Nagarjuna, JASB, LI, PP 115-20) ଏହି ନାଗାର୍ଜୁନଙ୍କୁ ତାନ୍ତ୍ରିକ ନାଗାର୍ଜୁନ ରୂପେ କେତେକ ସୂଚାଇଥାନ୍ତି । ମାତ୍ର ଆମ୍ଭେମାନେ ମନେ କରୁ ଯେ ସେ ମହାଯାନର ପ୍ରବକ୍ତା ନାଗାର୍ଜୁନ ଅଟନ୍ତି ଅଥବା ମାଧ୍ୟମିକ ଦର୍ଶନର ପ୍ରବକ୍ତା ନାଗାର୍ଜୁନ ହୋଇପାରନ୍ତି । କିନ୍ତୁ ମୁଞ୍ଜଙ୍କ ବିଶେଷ ପରିଚୟ ମିଳେ ନାହିଁ । ତଥାପି ତିବ୍ବତୀୟ ସୂତ୍ର

ଏହା ଦର୍ଶାଇଥାଏ ।

ଆର୍ଯ୍ୟଦେବଙ୍କୁ କେତେକ ୨ୟ ଓ ଅନ୍ୟ କେତେକ ୪ର୍ଥ ବା ୫ମ ଶତାବ୍ଦୀରେ ଅବସ୍ଥାପିତ କରିଥାନ୍ତି । ତାଙ୍କୁ ମଧ୍ୟ ୨ୟ ଖ୍ରୀଷ୍ଟାବ୍ଦରେ ନାଗାର୍ଜୁନଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିବା ଦର୍ଶାଯାଏ । ତାଙ୍କର ବାସସ୍ଥାନ ସିଂହପୁର ଥିବା ଜଣାଯାଇଛି । ଏହା ମଧ୍ୟ ତିବ୍ବତୀୟ ସୂତ୍ରରୁ ଆମ୍ଭମାନଙ୍କୁ ମିଳିଥାଏ । ସେ ଚତୁଃ-ଶତକ ଓ ଚିତ୍ତ-ବିଶୁଦ୍ଧ-ପ୍ରକରଣ ଆଦି ଅନେକ ବୌଦ୍ଧ ଦାର୍ଶନିକ ଗ୍ରନ୍ଥର ପ୍ରଣେତା । ତାଙ୍କୁ ଓଡ଼ିଶାର ବ୍ୟକ୍ତି ରୂପେ ଐତିହାସିକମାନେ ଜାଣନ୍ତି ।

ଓଡ଼ିଶା ସହିତ ସଂପର୍କରେ ଆସିଥିବା ବୌଦ୍ଧ ଯୋଗାଚାର ଦର୍ଶନର ପ୍ରବକ୍ତା ଅସଙ୍ଗ, ମୈତ୍ରେୟ ବୋଧିସତ୍ତ୍ୱ (୨୭୦-୩୫୦ ଖ୍ରୀଷ୍ଟାବ୍ଦ)ଙ୍କର ଶିଷ୍ୟ ଥିଲେ । ସେ ମାଧ୍ୟମିକ ଶୂନ୍ୟବାଦର ଜଣେ ବିଶିଷ୍ଟ ବ୍ୟାଖ୍ୟାକାର ଅଟନ୍ତି । ସେ ୩୧୦ରୁ ୩୯୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜୀବିତ ଥିଲେ ଏବଂ ତିବ୍ବତୀୟ ସୂତ୍ରରୁ ଆମ୍ଭେମାନେ ତାଙ୍କ ବିଷୟ ଜାଣିଥାଉ । ତାଙ୍କର ଭାଇ ବସୁବନ୍ଧୁ (୩୨୦ ରୁ ୪୦୦ ଖ୍ରୀଷ୍ଟାବ୍ଦ) ମଧ୍ୟ ଜଣେ ବିଶିଷ୍ଟ ଦାର୍ଶନିକ । ସେ ପଞ୍ଚସ୍କନ୍ଦ ପ୍ରକରଣ, ବ୍ୟାଖ୍ୟାୟୁକ୍ତି, କର୍ମସିଦ୍ଧି ପ୍ରକରଣ, ମୈତ୍ରେୟଙ୍କର ମହାଯାନ ସୂତ୍ରାଳଙ୍କାର ଉପରେ ପ୍ରତିତ୍ୟ ସମୁତ୍‌ପାଦ ସୂତ୍ର ଏବଂ ମଧ୍ୟନ୍ତ ବିଭାଗ ଉପରେ କେତେକ ଟୀକା ରଚନା କରିଥିଲେ । (Winternitz, History of Indian Literature, II, P. 3600, ଓ ପାଦଟୀକା) । ପ୍ରଫେସର ଇଉଇ (Ui)ଙ୍କ ମତକୁ ଟାକାକୁସୁ ଖଣ୍ଡନ କରି ତାଙ୍କ ସମୟ ୪୨୦-୫୦୦ ଖ୍ରୀଷ୍ଟାବ୍ଦ ରୂପେ ସୂଚାଇଥାନ୍ତି ।

ଓଡ଼ିଶା ସହିତ ସଂପୃକ୍ତ ଅନ୍ୟ ଜଣେ ନ୍ୟାୟତତ୍ତ୍ୱବିତ୍ ବୌଦ୍ଧ ଦାର୍ଶନିକ ହେଉଛନ୍ତି ଦିଗ୍‌ନାଗ । ତାଙ୍କୁ ଖ୍ରୀଷ୍ଟୀୟ ୫ମ ଶତକରେ ଅବସ୍ଥାପିତ କରାଯାଇଥାଏ । ଆମ୍ଭେମାନେ ତିବ୍ବତୀୟ ସୂତ୍ରରୁ ଜାଣିବାକୁ ପାଉ ଯେ ସେ ନ୍ୟାୟ ଦ୍ୱାରା, ହେତୁବିଦ୍ୟା, ପ୍ରଜ୍ଞାପ୍ତି ହେତୁ ସଂଗ୍ରହ ଶାସ୍ତ୍ର, ନ୍ୟାୟ ପ୍ରବେଶ, ଆଦିର ରଚୟିତା । ଇତସିଂ ଜଣାନ୍ତି ଯେ ସେ ସର୍ବଲକ୍ଷଣ ଧ୍ୟାନଶାସ୍ତ୍ର ନାମରେ ଏକ 'କାରିକା'ର ରଚନା କରି ବୌଦ୍ଧଧର୍ମକୁ ସବଳ ଭାବରେ ପ୍ରଚାର କରାଇଥିଲେ । ପୁରୀ ଜିଲ୍ଲାରେ କେତେକ ସ୍ଥାନ ତାଙ୍କ ନାମରେ ନାମିତ ହୋଇଥିବା ଜଣାଯାଏ ।

ସେହି ତିବ୍ବତୀୟ ସୂତ୍ରରୁ ଆମ୍ଭେମାନେ ଓଡ଼ିଶା ସହିତ ଗଭୀର ସଂପର୍କ ଥିବା ଅନ୍ୟ ଏକ ବୌଦ୍ଧ ପଣ୍ଡିତ ଧର୍ମକୀର୍ତ୍ତିଙ୍କ ସୂଚନା ପାଇଥାଉ । ଲାମା ତାରାନାଥଙ୍କ ମତରେ ସେ ତିବ୍ବତୀୟ ଶାସକ ସ୍ରୋଙ୍ଗ-ସାନ୍-ମୋଙ୍କ (୬୨୭-୬୯୮ ଖ୍ରୀଷ୍ଟାବ୍ଦ) ସମସାମୟିକ ଅଟନ୍ତି । ମାତ୍ର ଏହା ସଠିକ ନଥିବା ଅନ୍ୟ କେତେକ ବିଦ୍ୱାନ ଜଣାଇଥାନ୍ତି । ତାଙ୍କ ଦ୍ୱାରା ପରାଜିତ ହୋଇ ହିନ୍ଦୁ ନ୍ୟାୟ ଦର୍ଶନର ପ୍ରବକ୍ତା କୁମାରିଲଭଟ୍ଟ ବୌଦ୍ଧଧର୍ମର ନ୍ୟାୟବାଦକୁ ଶ୍ରେଷ୍ଠରୂପେ ଗ୍ରହଣ କରିଥିଲେ । ଦିଗ୍‌ନାଗଙ୍କର ନ୍ୟାୟବାଦକୁ ସେ ଅଧିକ ଭାବରେ ବ୍ୟାଖ୍ୟା କରିଥିଲେ ।

ମାତ୍ର ଉଦ୍ୟୋତକର ଧର୍ମକୀର୍ତ୍ତିଙ୍କ ନ୍ୟାୟବିନ୍ଦୁ ଓ ବାଦନ୍ୟାୟକୁ ତାଙ୍କ ରଚିତ ନ୍ୟାୟ ବାର୍ତ୍ତିକାରେ ପ୍ରତିବାଦ କରିଥିଲେ । ପୁରୀ ନିକଟ ଶିରୁଳୀ ପାଖରେ ଭାଗର୍ବୀ ଓ ରତ୍ନଚିରା ନଦୀର ସଙ୍ଗମ ସ୍ଥଳରେ ତାଙ୍କ ନାମରେ ଏକ ଗ୍ରାମ ରହିଥିବା ଜଣାଯାଏ ।

ଉପରୋକ୍ତ ବୌଦ୍ଧ ପଣ୍ଡିତ, ଶାସ୍ତ୍ରବିତ୍ ଓ ପ୍ରଚାରକମାନଙ୍କୁ ଭୌମ ରାଜତ୍ୱ ପୂର୍ବର ବୌଦ୍ଧ ଦାର୍ଶନିକ ତଥା ନ୍ୟାୟ ଶାସ୍ତ୍ରବିତ୍ ରୂପେ ସାଧାରଣତଃ ଗ୍ରହଣ କରାଯାଇଥାଏ । ମାତ୍ର ତିବ୍ବତୀୟ ସୂତ୍ରରୁ ହିଁ ସେମାନଙ୍କ ସଂପର୍କରେ ଆମ୍ଭେମାନେ ସବିଶେଷ ତଥ୍ୟ ପାଇଥାଉ । ମାତ୍ର ଭୌମ ରାଜ୍ୟମାନଙ୍କ ରାଜତ୍ୱ କାଳରେ ଅର୍ଥାତ୍ ଖ୍ରୀଷ୍ଟୟ ୬୧୪ରୁ ପ୍ରାୟ ୭୭୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବୌଦ୍ଧଧର୍ମ ଅତ୍ର ବହୁତ ଭାବରେ ରାଜ ପୃଷ୍ଟପୋଷକତା ଲାଭ କରିଥିଲା । ଏହ ସମୟରେ ଯେଉଁ କେତେକ ବୌଦ୍ଧ ସିଦ୍ଧାଚାର୍ଯ୍ୟ ବଜ୍ରଯାନ ଓ ସହଜଯାନ ବୌଦ୍ଧଧର୍ମର ପ୍ରବକ୍ତା ଥିଲେ ସେମାନଙ୍କ ସଂପର୍କରେ କେବଳ ରାହୁଲଭଦ୍ରଙ୍କ ବ୍ୟତୀତ ଅନ୍ୟମାନଙ୍କ ସମ୍ପର୍କରେ ଅଭିଲେଖ ସୂତ୍ରରୁ କୌଣସି ତଥ୍ୟ ମିଳିପାରିନାହିଁ । ଏହାର ଅନ୍ୟ ଏକ କାରଣ ହେଉଛି ଏହି ସିଦ୍ଧମାନେ ଅଧିକାଂଶ ରାଜପରିବାରର ଏବଂ ସେମାନେ ଭୌମ ରାଜ୍ୟର ପରିସର ମଧ୍ୟରେ ନଥିଲେ । ଯେଉଁ କେତେକ ସିଦ୍ଧ ଭୌମ ରାଜ୍ୟ ମଧ୍ୟରେ ରହିଥିବା ଜଣାଯାଏ ସେମାନେ ରାଜଗାଦି ତ୍ୟାଗ କରି ସିଦ୍ଧ ରୂପେ ବିଖ୍ୟାତ ହୋଇଥିଲେ ।

ଐତିହାସିକମାନେ ନିର୍ଣ୍ଣୟ କରନ୍ତି ଯେ ଯାଜପୁର ନିକଟ ଖଡ଼ିପଦାଠାରେ ଶୁଭାକରଦେବ ୧ମ ଏକ ବିହାର ନିର୍ମାଣ କରାଇଥିଲେ; ଏବଂ ସେଠାରେ ମହାମଣ୍ଡଳାଚାର୍ଯ୍ୟ ପରମଗୁରୁ ରାହୁଳ ରୁଚି ଅବଲୋକିତେଶ୍ୱରଙ୍କର ଏକ ପ୍ରତିମା ପ୍ରତିଷ୍ଠାକରି ରାଜା ଓ ତାଙ୍କ ନିଜ ନାମ ତହିଁରେ ଉତ୍କୀର୍ଣ୍ଣ କରାଇଥିଲେ । ଐତିହାସିକମାନେ ଏହା ୭ମ ଶତାବ୍ଦୀର ମଧ୍ୟ ଭାଗରେ ଘଟିଥିବା ପ୍ରକାଶ କରନ୍ତି । ତାରାନାଥଙ୍କ ବିବରଣୀରୁ ଜଣାଯାଏ ଯେ ମହାଚାର୍ଯ୍ୟ ବ୍ରାହ୍ମଣ ରାହୁଳ ଓଡ଼ିବିଶା ରାଜ୍ୟରେ ଜନ୍ମ ହୋଇଥିଲେ ଏବଂ ସେ ମହାମୁଦ୍ରା ପ୍ରଦର୍ଶନରେ ପାରଙ୍ଗମ ଥିଲେ । ପରେ ସେ ନାଳନ୍ଦାର ମହନ୍ତ ହୋଇ ସରହ ରୂପେ ପରିଚିତ ହେଲେ । ତିବ୍ବତୀୟ ସୂତ୍ରରୁ ଜଣାଯାଏ ଯେ ସରହ ଉଡ୍ଡିୟାନ ତନ୍ତ୍ରପୀଠ ସହିତ ସଂପୃକ୍ତ ଥିଲେ । ଉଡ୍ଡିୟାନକୁ ଗବେଷକମାନେ ଓଡ଼ିଶା ସହିତ ଚିହ୍ନିତ କରନ୍ତି । ସରହ ଏଠାରେ ବୁଦ୍ଧ-କପାଳ-ତନ୍ତ୍ରର ଉନ୍ମେଷ କରିଥିଲେ ଏବଂ ତାହା ସମଗ୍ର ତନ୍ତ୍ରପୀଠମାନଙ୍କରେ ବିଖ୍ୟାତ ଥିଲା ।

ଇନ୍ଦ୍ରଭୂତି ଉଡ୍ଡିୟାନର ରାଜା ରୂପେ ବ୍ୟକ୍ତ ହୁଅନ୍ତି । ସେ ଅନଙ୍ଗବଜ୍ର ଓ କମ୍ବଳପାଦ ଉଭୟଙ୍କର ଶିଷ୍ୟ ଥିଲେ । ସେ ୨୩ଟି ପୁସ୍ତକର ରଚୟିତା ରୂପେ ସୂଚୀତ ହୁଅନ୍ତି ଏବଂ ବୃଷ୍ଟାନ ହଂଗ୍ୟୁରରେ ସେଗୁଡ଼ିକର ତାଲିକା ହେବା ସହିତ ସେଗୁଡ଼ିକ ସଂରକ୍ଷିତ ରହିଅଛି । ତାଙ୍କୁ ଉଡ୍ଡିୟାନ କୁରୁକୁଲ୍ଲାଙ୍କ ସାଧନର ରଚୟିତା ରୂପେ ବ୍ୟକ୍ତ କରାଯାଏ । ଜ୍ଞାନସିଦ୍ଧ

ତାଙ୍କର ଶ୍ରେଷ୍ଠ ବଜ୍ରଯାନୀତନ୍ତ ପୁସ୍ତକ । ସେଥିରେ ପଞ୍ଚଧ୍ୟାନିବୁଦ୍ଧଙ୍କ ମତବାଦର ପ୍ରସାର କରାଯାଇଛି । ବଜ୍ରଯାନର ବିବିଧ ଗୁପ୍ତ ବା ନିଗୂଢ଼ ନୀତି ସଂପର୍କରେ ଏହି ପୁସ୍ତକ ଦିଗ୍‌ଦର୍ଶନ ଦେଇଥାଏ । ବୌଦ୍ଧଧର୍ମ ଅନ୍ତର୍ଗତ ମନ୍ତ୍ରଯାନର ପ୍ରବକ୍ତା ଏହି ଇନ୍ଦ୍ରଭୂତିଙ୍କୁ ୮ମ ଖ୍ରୀଷ୍ଟାବ୍ଦରେ ଅବସ୍ଥାପିତ କରାଯାଏ । ତାଙ୍କୁ ମଧ୍ୟ ସମ୍ବଲକ ବା ସମ୍ବଲର ରାଜା ରୂପେ ବ୍ୟକ୍ତ କରାଯାଏ ।

ଲକ୍ଷ୍ମୀଙ୍କରା ଇନ୍ଦ୍ରଭୂତିଙ୍କ ଭଗିନୀ ଏବଂ ତାଙ୍କୁ ୮୪ ସିଦ୍ଧଙ୍କ ମଧ୍ୟରୁ ଜଣେ ରୂପେ ଗ୍ରହଣ କରାଯାଇଥାଏ । ସେ ଲଙ୍କାପୁରୀର ରାଜା ଜଳେନ୍ଦ୍ରଙ୍କ ପୁତ୍ରଙ୍କୁ ବିବାହ କରିଥିଲେ ଏଂ ସହଜଯାନର ପ୍ରବକ୍ତ୍ରୀ ରୂପେ ପରିଚିତା ହୋଇଥିଲେ । ମାତ୍ର ତାଙ୍କ ପ୍ରଚାରିତ ଧର୍ମ ବଜ୍ରଯାନର ବିରୋଧାଭାସ ପ୍ରକଟ କରିଥାଏ । ସେ ଧ୍ୟାନିବୁଦ୍ଧ ଓ ତାଙ୍କଠାରୁ ଉଦ୍‌ଭୁତ ଦେବଦେବୀଙ୍କୁ ଗୁରୁତ୍ୱ ଦେଇନଥିଲେ । ସୋମବଂଶୀ ରାଜପୁତ୍ର କୁମାର ସୋମେଶ୍ୱର ଦେବଙ୍କ ସୋନପୁର ଓ ମହଡ଼ା ତାମ୍ରଶାସନ ଦ୍ୱୟ ଯଥାକ୍ରମେ ପଶ୍ଚିମ ଲଙ୍କା ରୂପେ ସୋନପୁର ଓ ଲଙ୍କା ନିକଟରେ ପ୍ରବାହିତ ଚିତ୍ରୋତ୍ପଳା ନଦୀର ଜଳ ଭଉଁରୀଙ୍କୁ ଲଙ୍କାବର୍ତ୍ତକ ସନିଧୌରୂପେ ବ୍ୟକ୍ତ କରିଥିବା ଦେଖାଯାଏ । ତେଣୁ ଲକ୍ଷ୍ମୀଙ୍କର ସୋନପୁରର ରାଜା ଜଳେନ୍ଦ୍ରଙ୍କ ପୁତ୍ରକୁ ବିବାହ କରିଥିବା ଐତିହାସିକମାନେ ସ୍ଥିର କରନ୍ତି । ସେ ସହଜମାର୍ଗର ପ୍ରବର୍ତ୍ତିକା ଏବଂ ଏହା ସମଗ୍ର ବୌଦ୍ଧଜ୍ଞାନ ଓ ତଥାଗତଙ୍କ ପୂଜାର ବିରୋଧରେ ଏକ ମାର୍ଗର ଉନ୍ମୋଚକ ଥିଲା ।

ଇନ୍ଦ୍ରଭୂତଙ୍କ ପୁତ୍ର ପଦ୍ମସମ୍ଭବ ଯୌବନ କାଳରେ କେତେକ ପ୍ରଜାଙ୍କୁ ହତ୍ୟା କରିବା ହେତୁ ରାଜ୍ୟରୁ ବହିଷ୍କୃତ ହୋଇଥିଲେ । ସେ ଜାହୋର ରାଜକୁମାରୀଙ୍କୁ ବିବାହ କରି ତିବ୍ବତକୁ ଯାଇ ସେଠାରେ ତନ୍ତ୍ରଯାନର ପ୍ରଚାର କରିଥିଲେ । ତାଙ୍କ ଦ୍ୱାରା ଲାମାମାନଙ୍କ ପରଂପରା ନିର୍ଦ୍ଦିଷ୍ଟ କରାଯାଇଥିଲା । ସେଠାରେ ସେ ବସାଳ-ୟି ବିହାର ପ୍ରତିଷ୍ଠା କରିଥିଲେ । ଏହା ବନ-ପା ଧର୍ମର ଅନୁଗାମୀମାନଙ୍କ ମଧ୍ୟରେ ଭାରତ ଓ ତିବ୍ବତୀୟ ରହସ୍ୟବାସୀ ଲାମାଧର୍ମର ପ୍ରସାରରେ ସହାୟକ ହୋଇଥିଲା । ଏହି ବିହାରଟି ୭୮୦ରୁ ୭୯୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ତାଙ୍କ ଶିଷ୍ୟ ଶାନ୍ତରକ୍ଷିତଙ୍କ ସହାୟତାରେ ନିର୍ମିତ ହୋଇଥିଲା । କେତେକ ଦ୍ରାହୋରକୁ କେନ୍ଦୁଝର ଅଞ୍ଚଳ ସହିତ ଚିହ୍ନିତ କରିଥାନ୍ତି ।

ଶାନ୍ତରକ୍ଷିତ ୭୪ ଥର ତିବ୍ବତ ଯାଇଥିଲେ ଓ ୭୪୯ ଖ୍ରୀଷ୍ଟାବ୍ଦରେ ସେ ସେଠାରେ ବସାମ-ଇ ବିହାର ନିର୍ମାଣ କରିଥିଲେ । ୭୬୨ ଖ୍ରୀଷ୍ଟାବ୍ଦରେ ତାଙ୍କର ଦେହାନ୍ତ ହୋଇଥିଲା । ସେ ଜାହୋର ରାଜପରିବାର ସହିତ ସଂପୃକ୍ତ ଥିବା ପାଗ୍-ସାମ୍-ଜୋନ୍-ଜାଙ୍ଗ ଏବଂ ବଷ୍ଟାନ ହଂଗ୍ୟୁରରୁ ମଧ୍ୟ ସମର୍ଥିତ ହୋଇଥାଏ । ଖୁବ୍ ସମ୍ଭବ ତାଙ୍କ ସମୟ ପର୍ଯ୍ୟନ୍ତ ଭୌମକର ରାଜାମାନେ ବୌଦ୍ଧଧର୍ମର ପୃଷ୍ଠପୋଷକତା କରିଥିଲେ । ତାଙ୍କ ପରେ ସେମାନେ ଶୈବ ଧର୍ମରୁ ଅନୁଗାମୀ ଏବଂ ସ୍ଥଳ ବିଶେଷରେ ବୈଷ୍ଣବ ଧର୍ମର ପୋଷକତା କରିଥିବା ଦେଖାଯାଏ ।

ଭୌମମାନଙ୍କ ପରେ ସୋମବଂଶୀ ଶାସନ କାଳରେ ତାନ୍ତ୍ରିକ ସିଦ୍ଧାଚାର୍ଯ୍ୟମାନଙ୍କ ଦ୍ୱାରା ବୌଦ୍ଧଧର୍ମର ସାଧନା ପରିଚାଳିତ ହୋଇଥିଲା । ତିବ୍ବତୀୟ ସୂତ୍ରରୁ ଚକ୍ର-ସମ୍ବର-ତନ୍ତ୍ରର ଉଲ୍ଲେଖ ଥିବା ଗୁରୁ ପରଂପରାରୁ ଆମ୍ଭେମାନେ ଜାଳନ୍ଧରୀପାଙ୍କ ଠାରୁ ଶିଷ୍ୟ ପ୍ରିଷ୍ୟ କ୍ରମରେ କୃଷ୍ଣାଚାର୍ଯ୍ୟ ଓ ବିରୂପ, ଗୁହ୍ୟ, ବିଜୟପା, ତିଲପା ଓ ଯାରୋପାଦିଙ୍କ ପରିଚୟ ପାଉଥାଉ । ଜଳନ୍ଧରୀପା ଓ କୃଷ୍ଣଚାର୍ଯ୍ୟ (କାହ୍ନୁପା) ହେ ବଜ୍ର ତନ୍ତ୍ରର ସାଧନା କରିଥିଲେ । ଏହି ତାଲିକା ମଧ୍ୟ କାଜିଦଓ୍ୱାସଂ ଦୁପ୍‌ଙ୍କ ତାଳିକା ସହ ସାମ୍ୟ ବହନ କରେ । କିନ୍ତୁ କମ୍ବଳ ଓ ପଦ୍ମବଜ୍ର ହେବଜ୍ରତନ୍ତ୍ରକୁ ବୌଦ୍ଧଧର୍ମରେ ସାମିଲ କରିଥିବା ବୁଷ୍ଟାନ ହଃଗ୍ୟୁ-ର-ରୁ ଜଣାଯିବା ସହିତ ତିବ୍ବତୀୟ ଅନୁବାଦ ସହିତ ସୁରକ୍ଷିତ ଥିବା ଉପଲବ୍ଧ ହୁଏ । ବିରୂପ ଓଡ଼ିଶାରେ ଶୈବଧର୍ମର ଘୋର ବିରୋଧି ଥିଲେ ଏବଂ ତାଙ୍କ ନାମରେ ଆସିଥା ପାହାଡକୁ ପରିକ୍ରମା କରୁଥିବା ନଦୀର ନାମ ବିରୂପା ହୋଇଥିବା ନବୀନ କୁମାର ସାହୁ ପ୍ରକାଶ କରିଥାନ୍ତି ।

ସିଦ୍ଧାଚାର୍ଯ୍ୟମାନେ ରଚନା କରିଥିବା ଦୋହାଗୁଡ଼ିକୁ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ 'ବୌଦ୍ଧଗାନ ଓ ଦୋହା' ପୁସ୍ତକରେ ୧୯୦୭ ଖ୍ରୀଷ୍ଟାବ୍ଦରେ ସଂକଳିତ କରିଥିଲେ । ଏହା ଚର୍ଯ୍ୟାଚର୍ଯ୍ୟ ବିନିଶ୍ଚୟ, ସରୋଜବଜ୍ରଙ୍କ ଦୋହାକୋଷ, କୃଷ୍ଣାଚାର୍ଯ୍ୟଙ୍କ ଦୋହାକୋଷ ଏବଂ ଆଂଶିକ ଡାକାର୍ଣ୍ଣବ ନାମରେ ଚାରିଭାଗରେ ବିଭକ୍ତ । ଏହାର ଭାଷାକୁ ନେଇ ଓଡ଼ିଶାରୁ କରୁଣାକର କର, ପଣ୍ଡିତ ବିନାୟକ ମିଶ୍ର, ବି.ସି. ମଜୁମଦାର, ଖଗେଶ୍ୱର ମହାପାତ୍ର, ବଙ୍ଗଳାରୁ ଏସ୍.କେ. ଚାଟାର୍ଜି, ଓ ରାହୁଳ ସଂସ୍କୃତ୍ୟାୟନ ଆଦି ମନୀଷିମାନେ ବହୁ ଗବେଷଣା କରିଛନ୍ତି । ତଥାପି ବଷ୍ଟାନ-ହଃଗ୍ୟୁର, ତାରାନାଥଙ୍କ ବିବରଣୀ ଓ ପାଗ୍-ସାମ୍-ଜୋନ୍-ଜାଙ୍ଗରେ ପ୍ରଦତ୍ତ ଗୁରୁପରଂପରାରେ କେତେକ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ଏହି ଗୁରୁମାନଙ୍କ ମଧ୍ୟରୁ କେତେକ ଓଡ଼ିଶାର ଥିବା ପ୍ରମାଣ କରାଯାଇଛି । ସେମାନଙ୍କ ମଧ୍ୟରେ ଶବରୀପା, କାହ୍ନୁପା, ସରହ, ଜାଳନ୍ଧରୀପା ପ୍ରଭୃତି ଓଡ଼ିଶାର ସିଦ୍ଧ ରୂପେ ଜଣାଯାଇଥାଏ । ଏମାନେ ସୋମବଂଶୀ ରାଜତ୍ୱ କାଳରେ (୮୫୦ରୁ ୧୧୦୮ ଖ୍ରୀଷ୍ଟାବ୍ଦ) ସେମାନଙ୍କ କାର୍ଯ୍ୟକଳାପ ଚଳାଇ ଥିଲେ । ମାତ୍ର ଗଙ୍ଗ ରାଜତ୍ୱରେ ସେମାନେ ରାଜନିଗ୍ରହ ଭୋଗିଥିବା ମାଦଳା ପାଞ୍ଜିରୁ ଜଣାଯାଏ ।

ପୂର୍ବତନ ସୁପରିଟେଣ୍ଡେଣ୍ଟ
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

# ତିବ୍ବତ ଓ ଓଡ଼ିଶା ସଂସ୍କୃତି ସମ୍ପର୍କରେ ଦିପଦ

ଡକ୍ଟର ଅରବିନ୍ଦ ପଟ୍ଟନାୟକ

ତିବ୍ବତ ରାଷ୍ଟ୍ରଟି ସମୁଦ୍ର ପତ୍ତନରୁ ଏତେ ଉଚ୍ଚରେ ଅବସ୍ଥିତ ଯେ, ଏହାକୁ ସେଥିପାଇଁ ପୃଥିବୀର ଛାତ (Roof of the World) ବୋଲି କୁହାଯାଏ । ପୁଣି ତ୍ରିପିଷ୍ଟପମ୍ ସ୍ୱର୍ଗର ପ୍ରତିଶବ୍ଦ ଏବଂ ଏହି 'ତ୍ରିପିଷ୍ଟପମ୍' ହିଁ ସ୍ୱର୍ଗ ବୋଲି ଗୋଟିଏ ମତ ପ୍ରଚଳିତ । ଆମର ଅତିକଥା ବା ମିଥ୍ ଓ ପୁରାଣମାନଙ୍କରେ ସ୍ୱର୍ଗ ଏବଂ ତାର ଦେବଦେବୀ, ଅପ୍ସରା, ବାଟିକା ଆଦିର ଯେଉଁ ବର୍ଣ୍ଣନା ଅଛି, ସେଥିରୁ ବହୁ ଉଚ୍ଚ ବା ବହୁଦୂରରେ ନଦେଖଥିବା ବା ନଦେଖି ହେବା ଭଳି ଜାଗା ବିଷୟରେ ହିଁ ଏପରି କଳ୍ପନା କରାଯାଇପାରେ ବୋଲି ମନେ ହେବ । ତେବେ, ତିବ୍ବତ, ତ୍ରିପିଷ୍ଟମ୍ ହେଉ ବା ନହେଉ ତାର ଭୌଗୋଳିକ ଉଚ୍ଚତା ଓ ଦୂରତା ଯେତେ ଅଧିକ ଏବଂ ଗମନାଗମନ ଦୃଷ୍ଟିରୁ ଯେତେ ଦୁର୍ଗମ ହେଲେ ସୁଦ୍ଧା, ସଂସ୍କୃତି ଦୃଷ୍ଟିରୁ ଏହା ସହିତ ଆମର ସମୀପ ସମ୍ପର୍କ ରହିଛି । ସଂପ୍ରତି ତିବ୍ବତର କିଛି ଅଧିବାସୀ ଓ ସେମାନଙ୍କର ଧର୍ମଗୁରୁ, ନେତା ଦଲାଇଲାମା ଭାରତର ଅତିଥି । ଅତିଥି ଦେବୋଭବ । କିନ୍ତୁ ଅତିଥି ବା ଦେବତା କହି ତାଙ୍କୁ ଦୂରରେ ବା ଉଚ୍ଚରେ ରଖିବା ନାହିଁ, ବରଂ ନିକଟର ଭାବିବା ଉଚିତ ହେବ ।

ଭାରତ, ଭୂଟାନ, ନେପାଳ, ବର୍ମା ବା ମିୟାଁମାର ସିକିମ୍, ଚୀନକୁ ଲାଗିଥିବା ମଧ୍ୟ-ଏସିଆର ଏହି ରାଷ୍ଟ୍ର ତିବ୍ବତକୁ ଏବେ ଚୀନର ସ୍ୱୟଂଶାସିତ ଅଞ୍ଚଳ ବୋଲି କୁହାଯାଉଛି । କିନ୍ତୁ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ବେଳକୁ ଓ ୧୮ଶ ଖ୍ରୀଷ୍ଟାବ୍ଦ ଯାଏ ଏହା ଗୋଟିଏ ଶକ୍ତିଶାଳୀ ସ୍ୱାଧୀନ ରାଷ୍ଟ୍ରଥିଲା । ଭାରତରୁ ମହାଯାନ ବୌଦ୍ଧ ଧର୍ମ ଏଠାକୁ ପ୍ରସାରିତ ହୋଇଥିଲା । ଏହା ଖ୍ରୀଷ୍ଟାବ୍ଦ ୭ମ ଶତାବ୍ଦୀର କଥା । ତିବ୍ବତରେ ପ୍ରଚଳିତ ତାନ୍ତ୍ରିକ ପରମ୍ପରା ଓ ଲୌକିକ ଧର୍ମ ବିଶ୍ୱାସ ସହିତ ମହାଯାନ ବୌଦ୍ଧ ଧର୍ମର ସମନ୍ୱୟ ଘଟି ସେଠି ଲାମା ଧର୍ମ ଭାବରେ ଚଳି ଆସୁଛି । ତିବ୍ବତର ଧର୍ମ ଓ ଶାସନର ମୁଖ୍ୟଙ୍କୁ କୁହାଯାଏ ଦଲାଇ ଲାମା । ଏହା ଗୋଟିଏ ଅସାଧାରଣ ପଦ । ଉପଯୁକ୍ତ ଲକ୍ଷଣ ଥିବା ଶିଶୁକୁ ଠାବ କରି ଏହି ପଦରେ ବରଣ କରାଯାଏ । ବର୍ତ୍ତମାନର ଦଲାଇ ଲାମାଙ୍କର ନାମ ତେନ୍‌ଜିନ୍ ଗ୍ୟାତ୍‌ସୋ । ୧୯୩୫ରେ ତାଙ୍କର ଜନ୍ମ । ତାଙ୍କୁ ଯେତେବେଳେ ଅଢ଼େଇ ବର୍ଷ ବୟସ ହୋଇଥିଲା, ସେତେବେଳେ ତାଙ୍କଠାରେ ପବିତ୍ର ଲକ୍ଷଣ ଦେଖି ଦଲାଇ ଲାମା ପଦରେ ଅଭିଷିକ୍ତ

କରାଯାଇଥିଲା । ତିବ୍ବତର ଧର୍ମ ପରମ୍ପରାରେ ବିଶ୍ୱାସ କରାଯାଏ ଯେ ଅବଲୋକିତେଶ୍ୱର ଏଥିପାଇଁ ଅବତାର ଗ୍ରହଣ କରନ୍ତି ।

ମହାଯାନ ବୌଦ୍ଧ ଧର୍ମରେ ବୋଧିସତ୍ତ୍ୱ ଅବଲୋକିତେଶ୍ୱରଙ୍କୁ କରୁଣାର ଅବତାର ଭାବରେ ଗ୍ରହଣ କରାଯାଇଛି । ସମସ୍ତ ଜୀବଙ୍କର ନିର୍ବାଣ ବା ମୁକ୍ତି ଲାଭ ତାଙ୍କର କାମନା । ସେମାନେ ମୁକ୍ତି ନପାଇବା ଯାଏ, ସେ ନିଜର ନିର୍ବାଣ କାମନା କରିବେ ନାହିଁ ବୋଲି ବ୍ରତ ଗ୍ରହଣ କରିଥିଲେ । ସେ ଅନ୍ଧ ପାଇଁ ପଥପ୍ରଦର୍ଶକ, ତାପଦଗ୍ଧ ଜୀବ ପାଇଁ ଶୀତଳ ଛାୟା, ରୋଗଗ୍ରସ୍ତ ଜୀବଙ୍କର ବୈଦ୍ୟ, ଦୁଃଖ ଦୁର୍ଦ୍ଦଶା ଭୋଗୁଥିବା ପ୍ରାଣୀଙ୍କର ପିତାମାତା । ସେ 'ଅବଲୋକିତ' ବା ଦୃଶ୍ୟମାନ ଜଗତର ଈଶ୍ୱର । ସେ ଚୀନରେ କୁଆନ୍‌ୟିନ୍ (Kuan-yim), ଜାପାନରେ କୁଆନ୍ ନନ୍ (Kwan non) ଭାବରେ ଆରାଧିତ ହୁଅନ୍ତି । ଏହି ଦେବତାଙ୍କର ଅଂଶ ଓ ଲକ୍ଷଣ ଘେନି ଜନ୍ମଲାଭ କରିଥିବା ପିଲାଟିକୁ ଖୋଜି ପାଇବା ମାତ୍ରେ, ସେହି ସମାଜରେ କିପ୍ରକାର ଶିହରଣ ଖେଳୁଥିବ ଏବଂ ତାଙ୍କୁ ଦଲାଇଲାମା ପଦରେ ବରଣ କରି ଅଧିଷ୍ଠିତ କଲାବେଳେ କି ଦିବ୍ୟ ଉତ୍ସାହ ଖେଳିଥିବ, ତାହା ଅନୁମାନ କରିପାରିଲେ, ୧୯୫୯ ବିପର୍ଯ୍ୟୟରେ ତିବ୍ବତୀୟ ପରମ୍ପରା, ବିଶ୍ୱାସଧାରା ଓ ଜନଜୀବନ ଉପରେ କି ପ୍ରଚଣ୍ଡ ଆଘାତ ଲାଗିଥିବ, ତାହା ଅନୁଭବ କରିହେବ । ଏହା କେବଳ ତିବ୍ବତର ନୁହେଁ, ମାନବ ସଭ୍ୟତାର ସମସ୍ୟା, ସେତେବେଳେ Readers Digest ପତ୍ରିକାର ଗୋଟିଏ ସଂଖ୍ୟାରେ ଚୀନର ବଳାତ୍କାର ଓ ତିବ୍ବତର ଦୁର୍ଦ୍ଦଶା ବିଷୟରେ ଆଲୋଚନା ଓ ବିବରଣୀମାନ ବାହାରିଥିଲା ।

ଓଡ଼ିଶାରେ ମହାଯାନ ବୌଦ୍ଧ ଧର୍ମ ପ୍ରବର୍ତ୍ତିତ ଥିଲା ଏବଂ ଏଠାରେ ବୌଦ୍ଧପୀଠ ଗୁଡ଼ିକରେ ପ୍ରତ୍ନତାତ୍ତ୍ୱିକ ଭୂଖୋଦନ ଫଳରେ ଅବଲୋକିତେଶ୍ୱରଙ୍କର ମୂର୍ତ୍ତିମାନ ମିଳିଛି । ଭାରତରେ ପଞ୍ଚମ ଶତାବ୍ଦୀ ପୂର୍ବରୁ ତାଙ୍କର ପୂଜା ପ୍ରଚଳିତ ଥିଲା । ଚୀନ ପରିବ୍ରାଜକ ଫାହିୟାନ୍‌ଙ୍କ ବିବରଣୀରୁ ଏହା ଜଣାଯାଏ । ତେଣୁ ବହୁସ୍ଥାନରୁ ଏହାର ନିଦର୍ଶନ ମିଳିବା ସ୍ୱାଭାବିକ । କିନ୍ତୁ ଓଡ଼ିଶା ତଥା ପୂର୍ବ ଭାରତର ଲୋକଧର୍ମ ସହିତ ତିବ୍ବତର ସଂପର୍କ ମନେ ପଡ଼ିଗଲେ, ତିବ୍ବତ ପ୍ରତି ମନ ମୁକୁଳିତ ହୋଇଯାଏ ।

ଓଡ଼ିଆ, ବଙ୍ଗଳା ଓ ଆସାମର ଲୋକ ସାହିତ୍ୟରେ ଡାକ ବଚନ ନାମରେ ଅନେକ ପଦ ପ୍ରଚଳିତ । ଏଗୁଡ଼ିକ ବିଶେଷତଃ କୃଷି ଓ ପାଣିପାଗ ସମ୍ପର୍କୀୟ ସୂଚନା ସମ୍ବଳିତ ପଦ । ଓଡ଼ିଆରେ ଏମିତି ଗୋଟିଏ ବଚନ ହେଲା -

ଛାଡ଼ିବୁ ଚଉଦ ଧରିବୁ ଚାରି
କମଣ କରିବୁ ଚାଷ କିଆରି
ବୁଣ ଖରୁଡି ପକା ଖତ

ହିତ ଖଣ୍ଡିକରେ ନଦେବୁ ହାତ
ଦୀର୍ଘରେ ହାତେ ପ୍ରତିରେ ହାତେ
ହିଡ଼ ବାନ୍ଧିଥିବୁ ଘାସ ସହିତେ
ଯେବେ ନହେବ ତହିଁରେ ଧାନ
ତେବେ କାଟିବୁ ଡାକର କାନ
ଚଷା ଭାଇ ମାନରେ
ଯହିଁ ପାଣି ତହିଁ ଧାନ୍‌ରେ ।
ଏହିପରି ପାଣିପାଗ ବିଷୟକ ପଦଟିଏ ହେଲା-
ଉଇଁ ନ ଦିଶେ ହସି ପଶେ
ଉତ୍ତର ମେଘ ଦକ୍ଷିଣେ ଆସେ
ସଜ ଗୋବରରେ ଅଂସେଇ ବସେ
ଡାକ ମେଲେ ଛତା ନିଶ୍ଚେ ବରଷେ ।

କିନ୍ତୁ ଏଇ 'ଡାକ' କିଏ ? ସେ କୋଉଠୁ ଆସି ଆମ ପାଣିପାଗ, ଚାଷବାସ ଉପରେ ପର୍ଯ୍ୟବେକ୍ଷଣ କରି ଏପରି ସୂଚନା ସମ୍ବଳିତ ବଚନମାନ ଶୁଣାଇ ଗଲେ ? ଡାକବଚନ ମାନେ କ'ଣ ?

ଶଶିଭୂଷଣ ଦାଶଗୁପ୍ତ, ତାଙ୍କର ''ଭାରତେର ଶକ୍ତିସାଧନା ଓ ଶାକ୍ତ ସାହିତ୍ୟ'' ବହିରେ ଉଲ୍ଲେଖ କରିଛନ୍ତି- 'ଡାକ' କଥାଟି ତିବ୍ବତୀ । ଏହାର ଅର୍ଥ ଜ୍ଞାନୀ । ସେଥିରୁ ସେ ଅନୁମାନ କରିଛନ୍ତି- ''ଡାକ ବଚନ କଥାର ମୂଳ ବୋଧହୁଏ ଜ୍ଞାନୀର ବଚନ ।'' ''ଡାକ''ର ସ୍ତ୍ରୀଲିଙ୍ଗ-ଡାକିନୀ । ତନ୍ତ୍ର ମତରେ ଦେହର ଷଡଚକ୍ରର ଅଧିଷ୍ଠାତ୍ରୀ ଦେବୀମାନେ ହେଲେ - ଡାକିନୀ, ରାକିନୀ, ଲାକିନୀ, କାକିନୀ, ଶାକିନୀ, ହାକିନୀ । ଏଗୁଡ଼ିକ ସଂସ୍କୃତ ଶବ୍ଦ ନୁହେଁ । ସେ ଅନୁମାନ କରନ୍ତି - ଏମାନେ ତିବ୍ବତ, ନେପାଳ, ଭୁଟାନ ଅଞ୍ଚଳର ଆଞ୍ଚଳିକ ଦେବୀ । ତାଙ୍କ ମତରେ 'ଡାକିନୀ' ଦେବୀ ତତ୍ତ୍ୱଜ୍ଞାନ ସଂପନ୍ନା ତିବ୍ବତୀୟ ଦେବୀ । ସେ ଲେଖିଛନ୍ତି- ''ଡାକିନୀ କଥାର ମୂଲ୍ ଅର୍ଥ ବୋଧହୟ ଛିଲ ଗୁହ୍ୟ ଜ୍ଞାନ ସଂପନ୍ନା; ଆମାଦେର ବାଙ୍ଗ୍‌ଲୋ 'ଡାଇନୀ' କଥାର ମଧ୍ୟେ ତାହାର ରେଶ୍ ଆଛେ; ମଧ୍ୟ ଯୁଗେର ନାଥ ସାହିତ୍ୟେର ରାଜା ଗୋପୀଚାନ୍ଦେର ମାତା ମୟନାବତୀ ମହାଜ୍ଞାନ ସମ୍ପନ୍ନା ଏଇ ଜାତୀୟ ଡାଇନୀ ଛିଲେନ୍ ।'' ବଙ୍ଗଳା ପରି ଓଡ଼ିଆରେ ମଧ୍ୟ ନାଥ ସାହିତ୍ୟ ଅଛି ଓ ନାଥ ସଂପ୍ରଦାୟ ଅଛନ୍ତି । ମତ୍ସ୍ୟେନ୍ଦ୍ରନାଥ ବା ମଛେନ୍ଦ୍ରନାଥ, ଗୋରେଖ ନାଥ ଭାରତୀୟ ସନ୍ଥ ପରମ୍ପରାରେ ଓ ଲୋକସମାଜରେ ଜଣାଶୁଣା । ବଙ୍ଗଳା ନାଥ ସାହିତ୍ୟର ମୟନାବତୀ ଏବଂ ଓଡ଼ିଆ ନାଥ ସାହିତ୍ୟର ମୁକ୍ତାଦେଈ ତାଙ୍କର ଶିଷ୍ୟା । ଓଡ଼ିଶାର ବୈଷ୍ଣବମାନେ ଯେଉଁ ଯୋଗାଶ୍ରିତ ଭକ୍ତିମାର୍ଗକୁ ଅବଲମ୍ବନ

କରିଥିଲେ, ତଥି ଉପରେ ଏହି ନାଥ ସିଦ୍ଧମାନଙ୍କର ଯୋଗାଚାରର ପ୍ରଭାବ ସ୍ପଷ୍ଟ । ବୈଷ୍ଣବ କବି ଯଶୋବନ୍ତ ଦାସ, ମୁକୁତା ଦେଈ ଓ ଗୋବିନ୍ଦ୍ରଚନ୍ଦ୍ର ଉପାଖ୍ୟାନକୁ ସୁନ୍ଦର ସାବଲୀଳ ପଦମାନଙ୍କରେ ଲେଖିଛନ୍ତି, ନାଥଯୋଗୀମାନେ କେନ୍ଦରା ବଜାଇ ବଜାଇ ତାହା ଗାନକରନ୍ତି । ବୌଦ୍ଧଗାନ ଓ ଦୋହା ନାମରେ ଛପା ହୋଇଥିବା ବୌଦ୍ଧ ଚର୍ଯ୍ୟାଗୀତିରୁ କେତୋଟିରେ ଓଡ଼ିଆ ଭାଷାର ମୂଳ ଚେହେରାର ଖୋଜ ବା ପଦଚିହ୍ନ ମିଳେ । କେବଳ ଓଡ଼ିଆ ନୁହେଁ, ପୂର୍ବ ଭାରତୀୟ ଭାଷାଗୁଡ଼ିକର ମୂଳରୂପ ସେଗୁଡ଼ିକରେ ଉପଲବ୍ଧ ହୁଏ । ଏଗୁଡ଼ିକ ତିବ୍ବତୀୟ ଭାଷାରେ ଅନୁବାଦ କରାଯାଇଛି, ଏଥିରେ ଥିବା ଧର୍ମତତ୍ତ୍ୱ ସହିତ ଓଡ଼ିଶାର ସନ୍ଥପରମ୍ପରାର ପ୍ରଚାରିତ ଧର୍ମତତ୍ତ୍ୱର ସମ୍ପର୍କ ଅଛି । ଏହି ଦୃଷ୍ଟିରୁ ତିବ୍ବତର ଭାଷା ଓ ଧର୍ମ, ସଂସ୍କୃତିର ଅଧ୍ୟୟନର ଗୁରୁତ୍ୱକୁ ଊଣା କରିହେବ ନାହିଁ । ଏବେ ଓଡ଼ିଶାରେ ରହୁଥିବା ତିବ୍ବତୀୟମାନଙ୍କ ସହିତ ଶ୍ରଦ୍ଧା ସଦ୍‌ଭାବ ରଖିବା ଏବଂ ତାଙ୍କର ଭାଷା, ସଂସ୍କୃତି ଓ ପରମ୍ପରା ସହିତ ଆମର କେତେ ସାମଞ୍ଜସ୍ୟ ଓ ପାର୍ଥକ୍ୟ ଅଛି, ତାହା ଅନୁଧ୍ୟାନ କରିବା ଦ୍ୱାରା ବହୁ ଅନୁଦ୍‌ଘାଟିତ ତଥ୍ୟ ଆଲୋଚନାକୁ ଆସିପାରେ । ଭାରତ ତିବ୍ବତ ମୈତ୍ରୀ ସଂସ୍ଥା ଏ ଦିଗରେ ବାଟ କଢ଼ାଇବ ବୋଲି ଆଶା କରାଯାଉଛି ।

ସମୟର ଦୂରତା ପରି ଭୌଗୋଳିକ ଦୂରତା ଓ ଗମନାଗମନର ଦୁରୁହତା ଅନେକ ସମୟରେ ଅଭ୍ରାନ୍ତ ତଥ୍ୟ ସଂଗ୍ରହର ଅନ୍ତରାୟ ହୋଇଥାଏ । ଏହି ପ୍ରସଙ୍ଗରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଓଡ଼ିଶା ଇତିହାସରୁ ଦୁଇଟି ବାକ୍ୟ ଉଦ୍ଧାର କରୁଛି । ସେ ଲେଖିଛନ୍ତି- ''ମୁକୁନ୍ଦ ଦେବଙ୍କ ସମ୍ବନ୍ଧରେ ତିବ୍ବତର ବୌଦ୍ଧ ଲାମା ତାଙ୍କ ବୌଦ୍ଧଧର୍ମର ଇତିହାସରେ ଏକ କୌତୂହଳଜନକ ସମ୍ବାଦ ଦେଇଛନ୍ତି । ସେ ଲେଖିଛନ୍ତି ଯେ, ଓଡ଼ିଶାର ଶେଷ ରାଜା ମୁକୁନ୍ଦଦେବ ବୌଦ୍ଧ ଥିଲେ ଓ ଅନେକ ବୌଦ୍ଧ ମଠ ଓ ବିହାର ନିର୍ମାଣ କରାଇଥିଲେ । ଏହା କେତେଦୂର ତଥ୍ୟ ସମର୍ଥିତ, ତାହା ଓଡ଼ିଶାର ଐତିହାସିକମାନେ କହିପାରିବେ । ସେହିପରି ପ୍ରଫେସର ଶଶିଭୂଷଣ ଦାଶ ଗୁପ୍ତଙ୍କର 'ଡାକ' 'ଡାକିନୀ' ସମ୍ପର୍କରେ ଉପରେ ଯେଉଁ ମତ ଉପସ୍ଥାପିତ ହୋଇଛି, ତାର ସତ୍ୟତା ତିବ୍ବତର ବିଦ୍ୱାନମାନେ ହିଁ କହିପାରିବେ । ତେଣୁ ଏପରି କେତେକ କ୍ଷେତ୍ରରେ ଆଲୋକପାତ ପାଇଁ ଅଧ୍ୟୟନ ସଂସ୍ଥାଟିଏ ଲୋଡ଼ା ।

ଗୁଞ୍ଜନ ପ୍ୟାଲେସ୍,
ରସୁଲଗଡ଼, ଭୁବନେଶ୍ୱର

(ଲେଖକ ଭାରତୀୟ ଭାଷା ସଂସ୍ଥାନ (ମହୀଶୂର)ର ପୂର୍ବାଞ୍ଚଳ ଶାଖା, ପୂର୍ବାଞ୍ଚଳ ଭାଷାକେନ୍ଦ୍ରର ପ୍ରାକ୍ତନ ଅଧ୍ୟକ୍ଷ)

# ଓଡ଼ିଆ ଓ ୱାର୍ତୁ

ଡକ୍ଟର ଖଗେଶ୍ୱର ମହାପାତ୍ର

ଥନ୍-ମି ସମ୍ଭୋଟଙ୍କ ଲିପିତାତ୍ତ୍ୱିକ ଭାରତ ଅଭିଯାତ୍ରାରେ ବିଶ୍ୱାସୀ ତିବ୍ବତତତ୍ତ୍ୱବିଦ୍‌ମାନଙ୍କ ମଧ୍ୟରୁ କେତେକଙ୍କର ଧାରଣା ଯେ, ସେ ତିବ୍ବତୀ ଭାଷାର ଲିପି ନିର୍ମାଣ ପାଇଁ ଏକ ଆଦର୍ଶଲିପି ଅନୁସନ୍ଧାନରେ କାଶ୍ମୀର ଆସିଥିଲେ । ସେ ଯୁଗରେ କାଶ୍ମୀର ବୌଦ୍ଧଧର୍ମର ଏକ ମୁଖ୍ୟ କେନ୍ଦ୍ର ଥାଇପାରେ; ମାତ୍ର ସମ୍ଭୋଟଙ୍କ ତିବ୍ବତୀ ଲିପି ନିର୍ମାଣ ସହିତ ସମ୍ବନ୍ଧାନ୍ୱିତ କୌଣସି ଐତିହାସିକ ବା ଲିପିତାତ୍ତ୍ୱିକ ପ୍ରମାଣ ମିଳେ ନାହିଁ । ଉ. ସ୍ନେଲଗ୍ରୋଭ ନିଜ ମତର ପ୍ରତିରକ୍ଷା ନିମନ୍ତେ କହିପାରନ୍ତି- "Unfortunately the complete destruction by Moslems of the Buddhist civilization of Kashmir has removed all evidences which might finally have confirmed the Kashmiri origin of Tibetan writing." (ପୃ. ୧୪୧) ମାତ୍ର କାଶ୍ମୀର ଅଞ୍ଚଳର ଲିପି ସହିତ ତିବ୍ବତୀ ବର୍ଣ୍ଣମାଳାର କିଛି ଆକୃତିଗତ ସୌସାଦୃଶ୍ୟ ଦେଖାଯାଏନା । ସୁତରାଂ, ସମ୍ଭୋଟଙ୍କ ଭାରତ ଅଭିଯାତ୍ରା ପରି ତିବ୍ବତୀ ଲିପିର କାଶ୍ମୀର-ମୂଳ ସନ୍ଦେହଜନକ ମନେହୁଏ ।

ତିବ୍ବତୀ ଲିପିର ଭାରତୀୟ ସୂତ୍ର ନିର୍ଦ୍ଧାରଣ ପ୍ରଶ୍ନ ବାଦ୍‌ଦେଲେ ବି ସ୍ୱୀକାର କରିବାକୁ ହେବ ଯେ, ପ୍ରାଚୀନକାଳରୁ ତିବ୍ବତରେ ଦୁଇଟି ଭାରତୀୟ ଲିପି- 'ୱାର୍ତୁ' ଓ 'ଲାନ୍‌ସା' ବା 'ରାନ୍‌ଜା' ପ୍ରସାର ଲାଭ କରିଥିଲା । ଶରତ୍‌ଚନ୍ଦ୍ର ଦାସଙ୍କ ମତ ଥିଲା- "Sambhota framed the system of Tibetan characters viz. U-chan or 'letters provided with heads' (ମାତ୍ରା) adapted from the Devanagari, and U-me or 'headless' from the Wartu". (୧୮୮୧, ପୃ. ୨୧୯) । ସେ ଅନୁମାନ କରିଥିଲେ ଲାନ୍‌ସା ହେଉଛି ନେପାଳୀ ବୌଦ୍ଧମାନଙ୍କଦ୍ୱାରା ବ୍ୟବହୃତ ଏକପ୍ରକାର ଅଳଙ୍କୃତ ଦେବନାଗରୀ ଏବଂ Wartu is probably the language of the people of Kafiristan or Bactria (୧୮୮୨, ପୃ.୨) । ପରବର୍ତ୍ତୀକାଳରେ ଦେବନାଗରୀର ଏକପ୍ରକାର ରୂପାନ୍ତର ସ୍ୱରୂପ ଲାନ୍‌ସା ଲିପିକୁ ଗ୍ରହଣ କରିବା ସହଜସାଧ୍ୟ ହୋଇଥିଲେ ହେଁ ୱାର୍ତୁ ସମ୍ପର୍କରେ ତାଙ୍କର ସୂଚନା ଖୁବ୍ ବିଭ୍ରାନ୍ତିକର ହୋଇଛି । ଓଡ଼ିଶା ପରିବର୍ତ୍ତେ ସ୍ୱାତ ଉପତ୍ୟକାରେ ଉଡ୍‌ଡୀୟାନ ପୀଠର ନିରୂପଣ କଲାଭଳି ଏହା ଏକ ସମାନ୍ତରାଳ ସମସ୍ୟା ସୃଷ୍ଟି କରିଛି ।

ତିବ୍ବତୀୟ 'ୱାର୍ତ୍ତୁ' ଶବ୍ଦର ଦୁଇଟି ସୂତ୍ର ଅନୁମାନ କରାଯାଇପାରେ । ପ୍ରଥମତଃ ଏହା ଗୋଟିଏ ସ୍ଥାନର ନାମରୁ ଉତ୍ପନ୍ନ ହୋଇପାରିଥାଏ ଏବଂ ଏହି ପ୍ରସଙ୍ଗରେ ଓଡ଼ିଶାର ଚୈନିକ ନାମ 'wu-tu' ବା 'wu-ta' ବିଚାରଣୀୟ । ଦ୍ୱିତୀୟତଃ ଏହା ଗୋଟିଏ ବର୍ଣ୍ଣନାତ୍ମକ ନାମ; ଯଥା- ବର୍ତ୍ତୁଳ ଶବ୍ଦରୁ ଆସିଥାଇପାରେ । ଏହି ପ୍ରକାର ଅନୁମାନର ଅବଲମ୍ବନ ଉଭୟ ଐତିହାସିକ ଓ ଲିପିତାତ୍ତ୍ୱିକ ପ୍ରମାଣ ଓଡ଼ିଶାରେ ଦୁଷ୍ପ୍ରାପ୍ୟ ନୁହେଁ ।

ଐତିହାସିକ ଦୃଷ୍ଟିକୋଣରୁ ପ୍ରାୟ ୭ମ ଶତାବ୍ଦୀବେଳକୁ ତିବ୍ବତ ଓ ଓଡ଼ିଶା ମଧ୍ୟରେ ସାଂସ୍କୃତି ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । ସେତେବେଳେ ବୌଦ୍ଧ ଜଗତରେ ପ୍ରଧାନ ତାନ୍ତ୍ରିକ କେନ୍ଦ୍ର ଉଡ୍ଡୀୟାନପୀଠ ରୂପେ ଓଡ଼ିଶା ଥିଲା ସୁପରିଚିତ । ସାରା ପ୍ରଦେଶରେ ବହୁ ଧାର୍ମିକ ଶିକ୍ଷାନୁଷ୍ଠାନ ଗଢ଼ି ଉଠିଥିଲା । ରତ୍ନଗିରିରେ ଏହିପରି ଏକ ଅନୁଷ୍ଠାନ ୮ମ ଶତାବ୍ଦୀ ବେଳକୁ ଏକ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଥିଲା । ପ୍ରଜ୍ଞା ଏହିଠାରେ ଯୋଗଶିକ୍ଷା କରି wu-cha (ଓଡ଼ିଶା) ରାଜାଙ୍କ ସାଂସ୍କୃତିକ ରାଷ୍ଟ୍ରଦୂତ ରୂପରେ ଖ୍ରୀ: ୭୯୫ରେ ଚୀନ ସମ୍ରାଟ ତେ-ସେଙ୍ଗ୍‌ଙ୍କ ଦରବାରକୁ 'ଖଣ୍ଡବ୍ୟୂହ' ଗ୍ରନ୍ଥ ସହିତ ଯାତ୍ରା କରିଥିଲେ । ଏହିପରି ଆଉ ଏକ ଅନୁଷ୍ଠାନ ଥିଲା ଜଗଦ୍ଦଳ ବିହାର ଯେଉଁଠାରେ କି, ପାଗସମ ଜୋନ ଜାଙ୍ଗ ଅନୁସାରେ, ମୁସଲମାନ ଅତ୍ୟାଚାରରେ ଆତଙ୍କିତ ବଙ୍ଗ ଓ ବିହାରର ବୌଦ୍ଧସନ୍ନ୍ୟାସିଗଣ ଆଶ୍ରୟ ଗ୍ରହଣ କରିଥିଲେ । ତିବ୍ବତକୁ ପଳାୟନ କରିବା ପୂର୍ବରୁ ଓଦନ୍ତପୁରୀର ଅଧ୍ୟକ୍ଷ ଶାକ୍ୟଭଦ୍ର ମଧ୍ୟ ଏହିଠାରେ ସାମୟିକ ଭାବେ ଆତ୍ମଗୋପନ କରିଥିଲେ । ସେ ସମୟରେ ଏଠାରେ ତିବ୍ବତୀୟ ଶିକ୍ଷାର୍ଥୀଗଣ (Lotsava) ବହୁ ସଂଖ୍ୟାରେ ଅବସ୍ଥାନ କରି ଧର୍ମଗ୍ରନ୍ଥମାନ ସଂସ୍କୃତରୁ ତିବ୍ବତୀଭାଷାରେ ଅନୁବାଦ କରୁଥିଲେ । ଡକ୍ଟର ନବୀନକୁମାର ସାହୁଙ୍କ ପୁସ୍ତକ (୧୯୫୮)ରେ ତିବ୍ବତ ଭାରତ ସମ୍ପର୍କର ପ୍ରଚୁର ବିବରଣୀ ଦିଆଯାଇଛି ଏବଂ ସେହି ଭିତ୍ତିରେ ତିବ୍ବତ ପ୍ରତି ଓଡ଼ିଶାର ସାଂସ୍କୃତି ଅବଦାନ ବିଚାର କଲେ ମନେହୁଏ, ଏକସମୟରେ, ଯେତେବେଳେ କି ତିବ୍ବତୀଭାଷାର ଏକ ସମୃଦ୍ଧ ଲିଖନ ପଦ୍ଧତି ପ୍ରଚଳିତ ହୋଇନଥିଲା, ସେତେବେଳେ ଓଡ଼ିଶା ଅଞ୍ଚଳର ଲିଖନ ରୀତି ତିବ୍ବତୀୟ ବିଦ୍ୟାର୍ଥୀମାନଙ୍କଦ୍ୱାରା ଅନୁସୃତ ହୋଇଥିଲା ଏବଂ ସେହି ଉତ୍କଳୀୟ ଲିପିମାଳାକୁ ସେମାନେ ଆକୃତିଗତ ବର୍ତ୍ତୁଳତା ହେତୁ କିମ୍ବା wu-tu ଅଞ୍ଚଳରେ ପ୍ରଚଳିତ ଥିବା ହେତୁ 'ୱାର୍ତ୍ତୁ' ନାମରେ ଅଭିହିତ କରିଥିଲେ ।

ଲିପିତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଓଡ଼ିଆ ଓ ତିବ୍ବତୀ ଅକ୍ଷରମାନଙ୍କ ମଧ୍ୟରେ ଆଶ୍ଚର୍ଯ୍ୟଜନକ ସାଦୃଶ୍ୟ ଦେଖାଯାଏ ଏବଂ କେତେକ ଅକ୍ଷର ସମ୍ପୂର୍ଣ୍ଣ ଏକାପରି ଲାଗେ । ଦୁଇଟି ଲିପିର ତୁଳନାତ୍ମକ ଅଧ୍ୟୟନ ନିମନ୍ତେ ଗୋଟିଏ ତିବ୍ବତୀ ପୋଥିରୁ ୱାର୍ତ୍ତୁ ଲିପିର ନିମ୍ନଲିଖିତ ବର୍ଣ୍ଣନା ପ୍ରଦାନ କରାଗଲା । ଏହି ପୋଥିଟି ବିଶ୍ୱଭାରତୀ ତିବ୍ବତୀ ବିଭାଗରେ ସଂରକ୍ଷିତ ଏବଂ ଏହାର ରଚନାକାଳ ଆନୁମାନିକ ଭାବେ ୧୬ଶ / ୧୭ଶ ଶତାବ୍ଦୀ ।

ପୋଥିର ପୁଷ୍ପିକାରେ ଲିପିବଦ୍ଧ ହୋଇଛି ଯେ 'ଶ୍ରେଷ୍ଠ ବ୍ରାହ୍ମ ଲିପି ଏବଂ ତିବ୍ବତୀ ଓ ହୋର ମଙ୍ଗୋଲୀୟ ଚିତ୍ରଲିପିସମୂହ ଅବିମିଶ୍ରଭାବେ ପୃଥକ୍ ପୃଥକ୍ ଦେଖାଇବାପାଇଁ ଅଳଙ୍କରଣରେ ପ୍ରୟୋଜନୀୟ ସଂକ୍ଷେପଣ କରାଗଲା । ଏହା ଅଭୂତପୂର୍ବ ଶ୍ରେଷ୍ଠ ଧର୍ମରାଜ ଶେଙ୍ ତୁ ବଂଶର ଷୋଡଶ କୁଳପୁତ୍ର ଥୋବେଚେନ ଓଆଙ୍କ ବିଶେଷ ନିର୍ଦ୍ଦେଶରେ ଚୂଡ଼ାନ୍ତଭାବେ ସନ୍ନିବେଶିତ କରାଗଲା । ଅବତାର-କ୍ରମ ଅନୁସାରେ ବାକ୍ୟେନ୍ଦ୍ର ସୁମତି ଦିନଶାସନଙ୍କ ଇଚ୍ଛାନୁସାରେ ଓ ତାଙ୍କ କୃତ ସଂସ୍କାର ଅନୁସାରେ, ଧର୍ମପ୍ରଚାର ନିମନ୍ତେ ଯଥାନିୟମରେ ଓ୍ୱର୍ତ୍ତୁ ଲିପି ସମ୍ପାଦିତ ହେଲା ।' (ବାକ୍ୟେନ୍ଦ୍ର ସୁମତି ହେଲେ ୫ମ ଦଲାଇଲାମା, ସମୟ ୧୬୧୭-୧୬୮୨ ଏବଂ ଶେଙ୍ତୁ ବଂଶର ରାଜତ୍ୱକାଳ ୧୬୬୨-୧୭୧୨ ।)

୧) ସ୍ୱରବର୍ଣ୍ଣ (୧୬) ଅ ଆ ଇ ଈ ଉ ଊ ଋ ୠ ଏ ଐ ଓ ଔ ଅଂ ଅଃ

୨) ବ୍ୟଞ୍ଜନବର୍ଣ୍ଣ (୩୪) - କ ଖ ଗ ଘ ଙ । ଚ ଛ ଜ ଝ ଞ । ଟ ଠ ଡ ଢ଼ ଣ । ତ ଥ ଦ ଧ ନ । ପ ଫ ବ ଭ ମ । ଯ ର ଲ ବ । ଶ ଷ ସ ହ । କ୍ଷ ।

୩) ବ୍ୟଞ୍ଜନରେ ସ୍ୱର ସଂଯୋଗ - କ କା କି କୀ ଇତ୍ୟାଦି ।

୪) ବ୍ୟଞ୍ଜନ ମାତ୍ରାର ନିମ୍ନନ୍ୟାସ - କୃ, କ୍ଳ, କ୍ର, କ୍ୱ ।

୫) ବ୍ୟଞ୍ଜନର ଦ୍ୱିତ୍ୱ ବିନ୍ୟାସ - କ୍କ, ଖ୍ଖ, ଗ୍ଗ ଇତ୍ୟାଦି ।

୬) ସଂଯୁକ୍ତା ନାସିକ୍ୟ ବ୍ୟଞ୍ଜନ - ଙ୍କ, ଞ୍ଚ, ଣ୍ଡ, ନ୍ତ, ମ୍ପ ।

୭) ଊର୍ଦ୍ଧ୍ୱମାତ୍ରାହୀନ ବ୍ୟଞ୍ଜନର ନିମ୍ନନ୍ୟାସ - କ୍ଳ, ସ୍ତ, ବ୍ବ ଇତ୍ୟାଦି ।

୮) ପ୍ଳୁତ ଅକ୍ଷର - କଃ, ଖଃ ।

୯) କଣ୍ଠ୍ୟବର୍ଣ୍ଣ ଲେଖିବାର ଦ୍ୱିବିଧ ରୀତି ।

୧୦) ଓଷ୍ଠ୍ୟବର୍ଣ୍ଣ ଲେଖିବାର ଦ୍ୱିବିଧ ରୀତି ।

୧୧) ବିବିଧ ଏକକ ଓ ସଂଯୁକ୍ତ ଅକ୍ଷର ଦୃଷ୍ଟାନ୍ତ ।

ଅପରାପର ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷାର ଲିପିସମୂହ ପରି ଓଡ଼ିଆ ଲିପି ମୂଳତଃ ବ୍ରାହ୍ମୀଲିପିରୁ ବିକଶିତ ହୋଇଥିଲେ ହେଁ, ଏହାର ଅନ୍ୟମାନଙ୍କଠାରୁ ବିଶେଷତା ହେଉଛି : ଗୋଲାକାର ଊର୍ଦ୍ଧ୍ୱମାତ୍ରା, ପୁଚ୍ଛ, ପୁଡ଼ା ଏବଂ କୋଣହୀନ ଆକୃତି । ଏହାର ବିକାଶକ୍ରମ ନିମ୍ନଲିଖିତରୂପେ ପରିଦୃଷ୍ଟ ହୁଏ ।

୧) ବ୍ରାହ୍ମୀ ଧଉଳିଗିରି, ଜଉଗଡ଼ର ଅଶୋକାନୁଶାସନ ଖ୍ରୀ:ପୂ: ୩ୟ ଶତାବ୍ଦୀ, ଖାରବେଳଙ୍କ ହାତୀଗୁମ୍ଫା ଅଭିଲେଖ (ଖ୍ରୀ: ପୂ: ୧ମ ଶତାବ୍ଦୀ)

୨) କୁଶାଣ ବ୍ରାହ୍ମୀ - ଗଣଙ୍କ ଭଦ୍ରକ ଅଭିଲେଖ (୩ୟ ଶତାବ୍ଦୀ)

୩) ଗୁପ୍ତ ଲିପି - ଧର୍ମରାଜଙ୍କ ସୁମଣ୍ଡଳ ଅଭିଲେଖ (ଖ୍ରୀ: ୫୭୦)

୪) ପେଟିକା-ଶିର, ଶଙ୍କୁ-ଶିର ଓ କୁଟିଳ ଲିପି - ମାଧବରାଜଙ୍କ ଗଞ୍ଜାମ ଅଭିଲେଖ

(ଖ୍ରୀ: ୬୨୦) ଭୌମକର ଓ ସୋମବଂଶୀମାନଙ୍କ ଅଭିଲେଖ (୮-୧୧ଶ ଶତାବ୍ଦୀ)

୫) ବ୍ୟୁଲାରଙ୍କ 'ପରବର୍ତ୍ତୀ କଳିଙ୍ଗ ଲିପି' ଏବଂ ବଜ୍ରହସ୍ତ ଦେବଙ୍କ ଉରଜାମ ଅଭିଲେଖ (ଖ୍ରୀ: ୧୦୫) ।

୬) 'ପତ୍ନ-ବଙ୍ଗଳା' ଲିପି-ଗଙ୍ଗାକାଳୀନ ଅଭିଲେଖ (୧୧-୧୪ଶ ଶତାବ୍ଦୀ)

ବସ୍ତୁତଃ ୭ମ ଶତାବ୍ଦୀରୁ ଓଡ଼ିଶାରେ ଏକ ସ୍ୱତନ୍ତ ଲିପିର ପ୍ରଚଳନ ଘଟିଥିଲା । ଭାଷାର ମୌଳିକ ଧ୍ୱନିସମୂହର ସୁପ୍ରକାଶ ପାଇଁ କଥା ଲିଖନ ମାଧ୍ୟମରେ ସ୍ୱାଚ୍ଛନ୍ଦ୍ୟ ରକ୍ଷା କରିବା ପାଇଁ ନାନା ଧରଣର ଲିପିରେ ପରୀକ୍ଷା ନିରୀକ୍ଷା ଆରମ୍ଭ କରାଯାଇଥିଲା । ଏହି ସ୍ଥିତିର ପରିଚାୟକ ସ୍ୱରୂପ ଦେଖାଯାଏ, ଗୋଟିଏ ଅଭିଲେଖରେ ବିଭିନ୍ନ ଲିପି ବ୍ୟବହୃତ ହୋଇଛି ଏବଂ ଜଣେ ରାଜାଙ୍କ ଅମଳରେ ଭିନ୍ନ ଭିନ୍ନ ଲିପି ଅନୁସୃତ ହୋଇଛି । ଦୃଷ୍ଟାନ୍ତ ସ୍ୱରୂପ, ଖ୍ରୀ: ୯୯୧ କାଳୀନ ଅନନ୍ତବର୍ମା ଦେବଙ୍କ ମଣ୍ଡାଶା ଦାନ ଶାସନରେ ବ୍ୟବହୃତ ମୋଟ ୭୮୮ଟି ଅକ୍ଷର ମଧ୍ୟରୁ ୧୯୯ଟି ଦକ୍ଷିଣ ନାଗରୀ, ୫୯ଟି ତେଲୁଗୁ, ୧୦୧ ଗ୍ରନ୍ଥ, ୧୫୭ଟି ଓଡ଼ିଆ ଏବଂ ବାଦ୍ ବାକି ତତ୍କାଳୀନ ପ୍ରଚଳିତ ନାନା ଲିପିରୁ ଗୃହୀତ ହୋଇଥିଲା ।

ଏହି ସନ୍ଧି ସମୟରେ କୁଟିଳ ଲିପି ଅବଲମ୍ବନରେ ପ୍ରତ୍ନ ଓଡ଼ିଆ ଲିପି ବିକାଶ ଲାଭ କରିଥିଲା । ବ୍ୟୁଲାରଙ୍କ 'ପରବର୍ତ୍ତୀ କଳିଙ୍ଗ' ଓ 'ପ୍ରତ୍ନ-ବଙ୍ଗଳା' ଲିପିଦ୍ୱୟ ବାସ୍ତବତଃ ଓଡ଼ିଆ ଲିପିର ଦୁଇଟି ପ୍ରାଥମିକ ପର୍ଯ୍ୟାୟ ଏବଂ ଏହା 'ପ୍ରତ୍ନ-ଓଡ଼ିଆ' ରୂପେ ଅଭିହିତ ହେବା ବାଞ୍ଛନୀୟ । ସପ୍ତମ ଶତାବ୍ଦୀର କୁଟିଳାକ୍ଷରରେ ସଂଯୁକ୍ତ ଶଙ୍କୁ ମାତ୍ରା କ୍ରମଶଃ କ୍ଷୁଦ୍ର ସମାନ୍ତରାଳ ରେଖାରେ ପରିଣତ ହେଲା ଏବଂ ବାମପାର୍ଶ୍ୱରେ ସୂକ୍ଷ୍ମ ତ୍ରିଭୂଜାକାର 'ନେପାଳୀପୁଡ଼ା' ସନ୍ନିବେଶିତ ହେଲା । ତାଳପତ୍ର ଉପରେ ଲୌହ ଲେଖନୀରେ ଲେଖିବା ନିମନ୍ତେ ଏହି ଦୁଇଟି ପରିବର୍ତ୍ତନ ସଂଘଟିତ ହୋଇଥିଲା । ପରବର୍ତ୍ତୀକାଳରେ ଏହି 'ନେପାଳୀ-ପୁଡ଼ା' ଅର୍ଦ୍ଧ-ବୃତ୍ତାକାର ଶୀର୍ଷ ମାତ୍ରାରେ ରୂପାନ୍ତରିତ ହୋଇଥିଲା । ସମ୍ଭବତଃ ଦକ୍ଷିଣ-ଭାରତୀୟ ଲିଖନ-ରୀତିର ପ୍ରଭାବରେ ଏହି ପରିବର୍ତ୍ତନ ନିୟନ୍ତିତ ହୋଇଥିଲା ।

ଓଡ଼ିଶାର ଅଭିଲେଖମାଳାରେ ଯେଉଁ ଅକ୍ଷର ସବୁର ନମୁନା ମିଳେ, ସେଗୁଡ଼ିକ ସାଧୁ ବା stylised ଲିଖନ ରୀତିର ଆଦର୍ଶ । ସେ ସମୟରେ ସାଧାରଣ ଲେଖାଲେଖିରେ ଯେ ଏକପ୍ରକାର ଛଟାଅକ୍ଷର ଚଳୁ ନଥିଲା ଏବଂ ତାହା ୭ମ ଶତାବ୍ଦୀ ପୂର୍ବରୁ କ୍ରମଶଃ ଗୋଲାକୃତି ପ୍ରାପ୍ତ ହୋଇନଥିଲା, ଏପରି ଅନୁମାନ ଭିତ୍ତିହୀନ ହୋଇନପାରେ । ସୁତରାଂ ପ୍ରତ୍ନ-ଓଡ଼ିଆ ଲିପିର ନିମ୍ନତମ ସମ୍ଭାବ୍ୟ ସମୟ-ସୀମା ୭ମ ଶତାବ୍ଦୀଠାରୁ ନିରୂପଣ କରାଯାଇପାରେ ।

ବର୍ତ୍ତମାନ ଉପରୋକ୍ତ ତଥ୍ୟସମୂହ ଉପରେ ନିର୍ଭର କରି ଏହିସବୁ ସିଦ୍ଧାନ୍ତମାନ

ଗ୍ରହଣ କରାଯାଇପାରେ -

(କ) କାଫିରସ୍ଥାନର ଭାଷା କିମ୍ବା କାଶ୍ମୀରୀ ଲିପିଠାରୁ ଓଡ଼ିଆ ଲିପି ସହିତ ଓ୍ୱାର୍ତ୍ତୁ ଲିପିର ସମ୍ବନ୍ଧ ନିକଟତମ ଓ ସମ୍ଭାବ୍ୟ ।

(ଖ) ଶଂସିତ ତିବ୍ବତୀ ପୋଥିର ଲେଖକ କୌଣସି କ୍ରମେ ଆଧୁନିକ ଓଡ଼ିଆ ଲିପିର ଦୃଷ୍ଟାନ୍ତ ଦେଇଛନ୍ତି ବୋଲି ଧରିନେଲେ ମଧ୍ୟ ତିବ୍ବତୀୟ ପରମ୍ପରାରେ ଓଡ଼ିଆ ଲିପି ଓ୍ୱାର୍ତ୍ତୁ ନାମରେ ପରିଚିତ ଥିଲା ବୋଲି କୁହାଯାଇପାରେ ।

(ଗ) ଉଡ୍‌ଡୀୟାନ ପୀଠ ଓଡ଼ିଶା ସହିତ ତିବ୍ବତର ଘନିଷ୍ଠ ସାଂସ୍କୃତିକ ସମ୍ପର୍କ ଥିବା ଦୃଷ୍ଟିରୁ ଏବଂ ଓଡ଼ିଶାଗତ ଧର୍ମଗୁରୁମାନେ ତିବ୍ବତୀୟ ଧର୍ମ-ପରମ୍ପରାରେ ମହତ୍ତ୍ୱ ଲାଭ କରିଥିବାରୁ, ପ୍ରାଚୀନ କାଳରେ ଓଡ଼ିଶାର ଲିପି ତିବ୍ବତରେ ପ୍ରସାର ଲାଭ କରିଥିବା ଏବଂ ସମ୍ଭବତଃ ଏହାହିଁ ସମ୍ଭୋଟଙ୍କର ଆଦର୍ଶ ଲିପି ହୋଇଥିବା ଅସମ୍ଭବ ନୁହେଁ ।

ବରମୁଣ୍ଡା, ଭୁବନେଶ୍ୱର

ସହାୟକ ଗ୍ରନ୍ଥସୂଚୀ :

S.C. Das - Paper in J A S B, Vols L, Part I, LI Part I, 1881-82
G.N. Roerich - Blue Annals, 1949
D.L. Snnellgrov - Buddhist Himalaya, 1957
Roy Andrew Miller - Paper in J A O S, Vol. 83, No 4, 1963
N. K. Sahu - Buddhism in Orissa, 1958
K.B. Tripathi - Evolution of Oriya Language and Script, 1962
ଉମେ, ଓ୍ୱାର୍ତ୍ତୁ ଓ ଓଡ଼ିଆ - ଖଗେଶ୍ୱର ମହାପାତ୍ର, ଜୀବନରଙ୍ଗ, ପୂଜାସଂଖ୍ୟା ୧୯୭୩

(ଲେଖକ ଜଣେ ପରିଚିତ ଭାଷାବିତ୍ ଏବଂ
ଆଦିବାସୀ ଭାଷା ସଂସ୍କୃତି ଏକାଡେମୀର ପ୍ରାକ୍ତନ ନିର୍ଦ୍ଦେଶକ)

# ପୁରାତନ ତୀର୍ଥଭୂମି ତିବ୍ବତ

ଡ. ନଗେନ୍ଦ୍ରନାଥ ପ୍ରଧାନ

ପୁରାତନ ସଂସ୍କୃତ ସାହିତ୍ୟରେ ତିବ୍ବତ ତ୍ରିବିଷ୍ଟପ ନାମରେ ବିଖ୍ୟାତ, ଏହାକୁ ପୁରାଣବର୍ଣ୍ଣିତ ଦେବତା ମାନଙ୍କର ଆବାସସ୍ଥଳୀ ସ୍ୱର୍ଗପୁରୀ ବୋଲି ବେଦ ମୂର୍ତ୍ତି ସାତ୍‌ବଲେକର ଓ ନାରାୟଣ ପାଗ୍‌ବୀ ପ୍ରଭୃତି ବିଦ୍ୱାନମାନେ ମତ ଦେଇଥାନ୍ତି । ପୁରାତନ କାଳରେ ମୁନିଋଷି ମାନଙ୍କ ମଧ୍ୟରୁ ଅନେକ ଏହି ଭୂମିରେ ବେଦମନ୍ତ୍ର ରଚନା କରିଥିଲେ ବୋଲି ମଧ୍ୟ ଆଲୋଚକମାନେ ମତ ଦେଇଥାନ୍ତି । ହିମାବର୍ତ୍ତନ ଯୁଗରେ ଜଳପ୍ଲବନ ବେଳେ ଏହି ସ୍ଥାନରେ ଲୋକେ ଆଶ୍ରୟ ନେଇ ପ୍ରାଣରକ୍ଷା କରି ପାରିଥିଲେ ଓ ପରେ ସେମାନେ ଦକ୍ଷିଣସ୍ଥ ନିମ୍ନଭୂମି ଭାରତବର୍ଷକୁ ବିସ୍ତାରିତ ହୋଇ ଆସିଥିଲେ । ହିମଯୁଗରୁ ସୃଷ୍ଟ ତୁଷାର ହ୍ରଦ ମାନ ସରୋବର ଏହି ଦେଶରେ ପୂର୍ବଭାଗରେ ହିମାଳୟରେ ଅବସ୍ଥିତ । ହିମାଳୟରେ ତିବ୍ବତ ଦେଶର ଏହି ହ୍ରଦ ଓ ଏହାର ନିକଟବର୍ତ୍ତୀ କୈଳାସ ପର୍ବତ ହେଉଛି ଭାରତୀୟମାନଙ୍କ ପାଇଁ ଅତ୍ୟନ୍ତ ପବିତ୍ରସ୍ଥଳୀ, କାରଣ ଏହା ଶିବଲୋକ ଭାବରେ ଖ୍ୟାତ ।

ସ୍ମରଣାତୀତ କାଳରୁ ଭାରତବର୍ଷର ସୁଦୂର ଦାକ୍ଷିଣାତ୍ୟ ଓ ପୂର୍ବସ୍ଥ ଆସାମ, ମଣିପୁରଠାରୁ ଆରମ୍ଭ କରି ସମଗ୍ର ଦେଶର ଲୋକେ ଏହି କୈଳାସ ମାନସରୋବର ତୀର୍ଥକୁ ଜୀବନର ଚରମ ପୁରୁଷାର୍ଥ ମୋକ୍ଷ ପ୍ରାପ୍ତି ଅଭିଳାଷ ପୋଷଣ କରି ଦୁର୍ଗମ ହିମାଳୟସ୍ଥ ଗିରିପଥ ମାନଙ୍କ ଦେଇ ଯାତ୍ରା କରି ଆସୁଛନ୍ତି । ମହାଭାରତର ବନପର୍ବ ବର୍ଣ୍ଣନାନୁସାରେ ଏଠାରେ ବଶିଷ୍ଠ ଋଷି ଓ ପତ୍ନୀ ଅରୁନ୍ଧତୀ ସ୍ନାତତର୍ପଣାଦି କରି ସିଦ୍ଧିପ୍ରାପ୍ତ ହୋଇଥିଲେ (ମହା.ବ.ପ. ୧୩୦/୧୪) । ମହାପର୍ବ (ମ.ସଭା ୮/୪)ରେ ଉଲ୍ଲେଖ ଅଛି ଯେ ସେ ଯୁଗରେ ଅର୍ଜୁନ ଏହି ସ୍ଥାନରେ ମାନସରୋବରରେ ସ୍ନାନକରି ଶିବ ପୂଜା କରିଥିଲେ । ମାନସରୋବର ତୀରବାସୀ ଜଣେ ସାଧୁ ମହାତ୍ମା ଏକ ଧବଳ ହଂସ ରୂପେ ଆସି ପୁଣ୍ୟାତ୍ମା ଭୀଷ୍ମ ଶରଶଯ୍ୟାରେ ଥିବାବେଳେ ତାଙ୍କୁ ଦର୍ଶନ କରି କୃତାର୍ଥ ହୋଇଥିବାର ବର୍ଣ୍ଣନା ଭୀଷ୍ମ ପର୍ବରେ (ଭୀଷ୍ମ ପ. ୧୧୯/୯୮)ରେ ବର୍ଣ୍ଣିତ ଅଛି । ମାନସରୋବରସ୍ଥ ପଦ୍ମବନରେ ଇନ୍ଦ୍ର ଏକଦା ଆତ୍ମଗୋପନ କରିଥିବାବେଳେ ଦେବଲୋକ ଚିନ୍ତିତ ଓ ଉଦ୍‌ବିଗ୍ନ ଥିବାରୁ ଉପଶ୍ରୁତି ନାମ୍ନୀ ଦେବୀ ସେମାନଙ୍କୁ ଇନ୍ଦ୍ରଙ୍କର କୁଶଳ ସଂବାଦ

ଦେଇଥିଲେ, ଏହି ହ୍ରଦ ସୁପ୍ରାଚୀନ ପ୍ଲିଷ୍ଟୋସିନ କାଳର କୌଣସି ହିମାବର୍ତ୍ତନ ଯୁଗରେ ସୃଷ୍ଟି ହୋଇଥିବାରୁ ଏହାକୁ ବ୍ରହ୍ମା ହୂନ ଦେଶରେ ଏହି ପଦ୍ମବନ ଶୋଭିତ ବିରାଟ ହ୍ରଦ ଓ ତହିଁରୁ ନି ।ସୃତ ସରଯୂ (ଘର୍ଘରା) ନଦୀକୁ ସର୍ଜନା କରିଥିଲେ ବୋଲି ବିଶ୍ୱାସକୁ ରାମାୟଣର ବାଳକାଣ୍ଡରେ କବି ବାଲ୍ମିକୀ ଲିପିବଦ୍ଧ କରିଥିଲେ । (ରା.ବା.କା. ୨୪,ଅଧ୍ୟା) ଏହି ହ୍ରଦର ଅନ୍ୟନାମ ହେଉଛି ଉଜ୍ଜାନକ । କୈଳାସ ଓ ଗୁରିଆପର୍ବତ ପରି ଅତ୍ୟୁଚ୍ଚ ବିଶାଳ ପର୍ବତ ଶ୍ରେଣୀର ଚିରୋଲ୍ଲାସ ମହନୀୟ ଭୂପ୍ରକୃତିରେ ଅତୁଳନୀୟ ଲାବଣ୍ୟମଣ୍ଡିତ ଶୋଭା ସଂପଦର ମଧ୍ୟ ଭାଗରେ ଏହି ହ୍ରଦର ଅବସ୍ଥିତି । ଦର୍ଶକକୁ ମନ୍ତ୍ରମୁଗ୍ଧ କରି ଦିଏ ।

ମାନସରୋବର ହେଉଛି ପୂର୍ବ ଓ ପଶ୍ଚିମ ବ୍ୟାପ୍ତ ଦୁଇଟି ହ୍ରଦର ସମଷ୍ଟି । ପଶ୍ଚିମହ୍ରଦକୁ ରାବଣା ହ୍ରଦ କୁହାଯାଏ, କାରଣ ରାବଣ ଏହି ସ୍ଥାନକୁ ଦିଗ୍‌ବିଜୟରେ ଯାଇ କୈଳାସ ପର୍ବତକୁ ଉତ୍‌ପାଟିତ କରିବାକୁ ପ୍ରୟାସ କରିଥିବାରୁ ତା'ର ପାଦତଳସ୍ଥ ଭୂଖଣ୍ଡ ପାତାଳଗାମୀ ହୋଇଯିବାରୁ ସେ ବ୍ୟର୍ଥ ମନୋରଥ ହୋଇଥିଲେ । କାଳାନ୍ତରରେ ତାହା ତୁଷାର ପୁଷ୍ଟ ହୋଇ ହ୍ରଦରେ ପରିଣତ ହୋଇଥିଲା । ପୂର୍ବହ୍ରଦଟିର ନାମ ମାନସରୋବର । ଏହାର ଉତ୍ତରରେ ଅବସ୍ଥିତ କୈଳାସ ଗିରି ଓ ଦକ୍ଷିଣକୁ ପରିବ୍ୟାପ୍ତ ଦେବତାତ୍ମା ହିମାଳୟ । ଏହି ହ୍ରଦରୁ ପୂର୍ବଦିଗକୁ ହିମାଳୟରେ ପ୍ରବାହିତ ବ୍ରହ୍ମପୁତ୍ର ନଦୀକୁ ଏବଂ ପଶ୍ଚିମସ୍ଥ ରାବଣା ହ୍ରଦରୁ ପଶ୍ଚିମକୁ ପ୍ରବାହିତ ସିନ୍ଧୁନଦୀ ଦ୍ୱୟକୁ ଏହାର ତୁଷାର ତରଳ ଜଳ ସଦାନୀରା କରି ରଖିଥାଏ । ଏହି ହ୍ରଦଠାରେ ଦକ୍ଷଯଜ୍ଞରେ ଆତ୍ମଝାସ ଦେଇଥିବା ଆଦ୍ୟାଶକ୍ତି ସତୀଙ୍କର ଦକ୍ଷିଣହସ୍ତ ପଡ଼ିଥିବାରୁ ଏହା ଅତ୍ୟନ୍ତ ପବିତ୍ର ଶକ୍ତିପୀଠ ଭାବରେ ଖ୍ୟାତ । ଏଠାରେ ଶିବ ଅମର ନାମରେ ଭୈରବ ରୂପେ ପୂଜିତ ଓ ଦେବୀ ଭୈରବୀ ଦାକ୍ଷାୟାଣୀ ନାମରେ ପୂଜିତା । ଏହାକୁ କୈଳାସ ପର୍ବତର ପାଦଦେଶସ୍ଥ ଦାରୁଚିନି ମଠଠାରୁ ଗିରିପଥ ଦେଇ ତୀର୍ଥଯାତ୍ରୀମାନେ ଯାତ୍ରା କରିଥାନ୍ତି । ଉର୍ମିଭଙ୍ଗିଳ ଗିରିବର୍ତ୍ମ ଦେଇ ଯାତ୍ରାବେଳେ ତୁଷାର ମଣ୍ଡିତ ପର୍ବତ ଶୃଙ୍ଗମାନଙ୍କର ନଭଶ୍ଚୁମ୍ବୀ ଦୃଶ୍ୟ ପଥିକ ମନରେ ଭାବାନ୍ତର ସୃଷ୍ଟି କରି ପଥଶ୍ରାନ୍ତି ଅପହରଣ କରେ । ଚତୁର୍ଦ୍ଦିଗରେ ପର୍ବତ ଶୃଙ୍ଗ ବେଷ୍ଟିତ ଏହି ହ୍ରଦର ସୁନୀଳ ଜଳ ରାଶିରେ ସଂଖ୍ୟାହୀନ କର୍ପୂର ଧବଳ ରାଜହଂସ ଓ ଚକ୍ରବାକଙ୍କର ଲୀଳାୟିତ ସନ୍ତରଣ ଜୀବଲୋକରେ ଅବିସ୍ମରଣୀୟ ଅନୁଭୂତି ଓ ସ୍ମୃତି ସଂଚାର କରିଥାଏ । ମାନସରୋବରର ୮୦ ମାଇଲ ପରିଧି ପଥରେ ପ୍ରାୟ ୧୦-୧୨ ମାଇଲ ବ୍ୟବଧାନରେ ବହୁ ପୁରାତନ କାଳରୁ ଅବସ୍ଥିତ ରହିଛନ୍ତି ମୁନି ଋଷିମାନଙ୍କର ପବିତ୍ର ତପଭୂମି ରୂପେ ସାଧନା ପୀଠ ମଠମାନ । ଏମାନଙ୍କ ମଧ୍ୟରେ ପ୍ରଧାନ ବିବେଚିତ ଜୁଗୁମ୍ପା ମଠରେ ହରପାର୍ବତୀ ପ୍ରତିମା ପୁରାତନକାଳରୁ ପୂଜିତା ହୋଇ ଆସି ଶ୍ରାନ୍ତକ୍ଳାନ୍ତ ତୀର୍ଥବାସୀ ମାନଙ୍କୁ ଅଭୟ ପ୍ରଦାନ ପୂର୍ବକ ମାନସିକ ଇଚ୍ଛା ପୂର୍ଣ୍ଣ କରିଥାନ୍ତି । ଏହି ଗୁମ୍ଫାର ଗୁପ୍ତ ଗୁହାରେ ପୁରାତନ

କାଳରୁ ସୁରକ୍ଷିତ ଓ ଗଚ୍ଛିତ ରହିଆସିଛି ଅସଂଖ୍ୟ ଧର୍ମଗ୍ରନ୍ଥମାନଙ୍କର ପାଣ୍ଡୁଲିପି, ଯାହାକୁ ଗୋପନରେ ରଖାଯାଇଥାଏ । ଜୁଗୁମ୍ପା ମଠର ସାଧକମାନେ ଜପଯୋଗୀ କିନ୍ତୁ ବୌଦ୍ଧ ମଠର ସାଧକମାନେ ପ୍ରାଣାୟାମଯୋଗୀ ବା ହଠଯୋଗୀ । ଏପରି ଏକଯୋଗୀ ମଠରୁ ପୂର୍ବେ ରାଜାପରୀକ୍ଷିତ ପୁତ୍ର ଜନ୍ମେଜୟଙ୍କ ନାମରେ ପ୍ରଦତ୍ତ ଏକ ତାମ୍ରଲିପି ଆବିଷ୍କୃତ ହୋଇ ପ୍ରକାଶିତ ହୋଇଥିଲା ।

ଏହି ହ୍ରଦର ଉତ୍ତର ପଶ୍ଚିମରେ ଅବସ୍ଥିତ ହିମାଳୟର ବିଖ୍ୟାତ କୈଳାସ ପର୍ବତ । ଏହା ତିବ୍ବତ ଦେଶ ଅନ୍ତର୍ଗତ ଥିବା ହେତୁ ତିବ୍ବତର ଦାରଚିନ ଲାମା ସରକାରଙ୍କର ବିନାନୁମତିରେ କେହି କୈଳାସ ଆରୋହଣ କରି ପାରୁନଥିଲେ । ଏହି କୈଳାସ ପର୍ବତର ଚମରୀଗାଇ, ଓ ମେଷ ପ୍ରଭୃତି ସମସ୍ତେ ଧବଳଲୋମ ବିଶିଷ୍ଟ । ଏହି ପର୍ବତର ଆକୃତି ଏକ ବେଦିକା ପରି, ଊର୍ଦ୍ଧ୍ୱଦେଶ ସମତଳ । ଏହି ପର୍ବତର ଚତୁର୍ଦ୍ଦିଗ ତୁଷାର ପୁଷ୍ଟ ନଦୀମାନଙ୍କ ଦ୍ୱାରା ବେଷ୍ଟିତ । ସେହି ନଦୀ ନିର୍ଗତ ସ୍ଥାନରେ ତୁଷାର ଜଳପୂର୍ଣ୍ଣ ଗୌରୀକୁଣ୍ଡ ଅବସ୍ଥିତ । ସେହି କୁଣ୍ଡ ବା ହ୍ରଦଠାରୁ ଯେଉଁ ଉତ୍ତୁଙ୍ଗ ଶୃଙ୍ଗଟି ଗଗନ ଭେଦ କରି ଊର୍ଦ୍ଧ୍ୱକୁ ଉତ୍‌ଥିତ ତାହା ସତେ ଯେପରି ତୁଷାର ମୁକୁଟ ପରିଧାନ କରିଥିବା ପରି ପ୍ରତୀତ ହୁଏ । ତାହାହିଁ ହେଉଛି ବହୁବର୍ଣ୍ଣିତ ପୁରାଣ ପ୍ରସିଦ୍ଧି ପ୍ରାପ୍ତ କୈଳାସ ଶିଖର । ଏହାର ଆକାର ଏକ ଅତିକାୟ ଭୀମକାନ୍ତ ଶିବଲିଙ୍ଗ ସଦୃଶ । ଏହା ସହିତ ରହିଛନ୍ତି ଶତଶତ କ୍ଷୁଦ୍ର ବୃହତ ତୁଷାର ମୁକୁଟ ଶୁଭ୍ର ଶିବଲିଙ୍ଗାକୃତି ଗିରିଶୃଙ୍ଗ । ଏଠାରେ ଥିବା ଏକ ମନ୍ଦିରରେ ଶୁକ୍ଳ ପ୍ରସ୍ତର ନିର୍ମିତ ଶିବ ଲିଙ୍ଗ ପୂଜିତ ଯାହାକୁ ଦର୍ଶନ କରି ଭକ୍ତଗଣ ଶିବ ଲୋକ ପ୍ରାପ୍ତି ତୁଲ୍ୟ ବିମଳ ଆନନ୍ଦ ଲଭିଥାନ୍ତି । ନିକଟବର୍ତ୍ତୀ ବହୁ ବୌଦ୍ଧ ମଠ ଓ ପୀଠର ଲାମାମାନେ ସ୍ନାନାନ୍ତେ ଶିବଲିଙ୍ଗଙ୍କୁ କୁଙ୍କୁମ କେଶର ଦେଇ ଉଚ୍ଚସ୍ୱରରେ ମନ୍ତ୍ରପାଠ କରି ପୂଜାକରନ୍ତି । ଆରତିବେଳେ ଶଙ୍ଖ, ବଂଶୀ, ଡମ୍ବରୁ, ଟମକନାଦରେ ସ୍ଥାନଟି ପ୍ରକମ୍ପିତ ହୋଇଉଠେ । ସନ୍ନିକଟବର୍ତ୍ତୀ ମନ୍ଦିରରେ ଚତୁର୍ଭୂଜା କାଳୀମୂର୍ତ୍ତି ପୂଜିତା ହୁଅନ୍ତି । ସମସ୍ତ ପୂଜା ବିଧିରେ ବୈଦିକ, ବୌଦ୍ଧ ଓ ତନ୍ତ୍ରାଚାରର ସମାବେଶ ଘଟିଛି । ପାର୍ଶ୍ୱରେ ପରିବ୍ୟାପ୍ତ ସୁଦୀର୍ଘ ଦୀର୍ଘିକା ସ୍ଫଟିକତୁଲ୍ୟ ସ୍ୱଚ୍ଛ ସଲିଳା ପବିତ୍ରତମ ମାନସରୋବର ହ୍ରଦ । ଯହିଁରୁ ପ୍ରତିବର୍ଷ ଶରଦାଗ ମନରେ ଶୁଭ୍ରହଂସଗଣ ଭାରତ ବର୍ଷ ଭ୍ରମଣରେ ଆସନ୍ତି ବୋଲି ପୁରାତନ କବି ପ୍ରସିଦ୍ଧି ରହିଆସିଛି ।

ସୃଷ୍ଟି ଆରମ୍ଭରୁ ଶିବଙ୍କର ଆବାସସ୍ଥଳୀ ରୂପେ କୈଳାସ ଶିଖର ବିଖ୍ୟାତ । ସାଗର ମନ୍ଥନରୁ ଜାତ ବିଶ୍ୱବିଧ୍ୱଂସୀ କାଳକୂଟ ବିଷଜ୍ୱାଳାରୁ ବିଶ୍ୱରକ୍ଷା ନିମିତ୍ତ ନିତ୍ୟ ଯୋଗସମାଧି ମଗ୍ନ ଦେବ ଦେବ ମହାଦେବ ଏକ ମାତ୍ରକ୍ଷମ ହୋଇ ଏହି ବିଷପାନ କରି ନୀଳକଂଠ ନାମ ଧାରଣ କଲେ । କଣ୍ଠରେ ଏହି ବିଶ୍ୱଦାହୀ ବିଷଧାରଣ କରିଥିବାରୁ ତା'ର ଜ୍ୱାଳା

ନିବାରଣ ପାଇଁ ଶିବ ଏହି ତୁଷାରାଳୟ କୈଳାସରେ ଚିର ଅବସ୍ଥାନ କରି ଶାନ୍ତିଲାଭ କରନ୍ତି । ଏହିଠାରେ ସ୍ୱପତ୍ନୀ ଦ୍ୱକ୍ଷକନ୍ୟା ସତୀ ସହିତ ବାସବେଳେ ଆକାଶ ମାର୍ଗରେ ଦକ୍ଷଯଜ୍ଞକୁ ସିଦ୍ଧଗଣ, ମୁନିରଷିଗଣ ଓ ଦେବଗଣ ବିମାନରେ ଯାତ୍ରା କରୁଥିବାର ଦେଖି ସତୀ ଶିବଙ୍କୁ ନିମନ୍ତ୍ରଣ ନ କରି ମହାଯଜ୍ଞ କରୁଥିବାର ଜାଣିପାରିଥିଲେ । ପତିଙ୍କର ବାରଣସତ୍ତ୍ୱେ ସ୍ୱଜନଦର୍ଶନ ଲୋଭ ସମ୍ବରଣ କରି ନପାରି ସତୀ ଦକ୍ଷସ୍ଥଳକୁ ଯାଇ ସେଠାରେ କଠୋର ଭାଷାରେ ଶିବନିନ୍ଦା ସହ୍ୟ କରି ନ ପାରି ଯଜ୍ଞ ଅଗ୍ନିରେ ଆତ୍ମଝାସ ଦେଇଥିଲେ । ପତ୍ନୀର ଏହି ଦାରୁଣ ମୃତ୍ୟୁ ସଂବାଦରେ ଶିବ ଉଗ୍ର ଭୀମଭୈରବ ମୂର୍ତ୍ତିଧରି ଯଜ୍ଞର ଧ୍ୱଂସ ସାଧନ ସହିତ ଦକ୍ଷବଧ କଲେ । ବିଶ୍ୱ ପ୍ରଳୟ ସୃଷ୍ଟିକରି ବିଶ୍ୱ ବିଧ୍ୱଂସ କରିବା ଲକ୍ଷ୍ୟରେ ପ୍ରଚଣ୍ଡ ପ୍ରମର ତାଣ୍ଡବନୃତ୍ୟ ଆରମ୍ଭ କରନ୍ତେ ଦେବାଦିଙ୍କ ସହିତ ସମସ୍ତ ସିଦ୍ଧସାଧକ ମୁନିରଷିଙ୍କର ବ୍ୟାକୁଳ ନିବେଦନପୂର୍ଣ୍ଣ ମହିମ୍ନସ୍ତବ ଶୁଣି ଆଶୁତୋଷ ମୂର୍ତ୍ତିଧାରଣ ଅର୍ଦ୍ଧଦଗ୍ଧ ସତୀ ଶରୀର କାନ୍ଧରେ ବହନକରି ପତ୍ନୀବିରହ ଜନିତ ଶୋକାକୁଳିତ ଭାବେ ସେ ବିଶ୍ୱଭ୍ରମଣ କରିଥିଲେ । ସତୀଙ୍କର ସେହି ପଳିତ ଅଙ୍ଗରୁ ଛିନ୍ନ ଅଂଶ ମାନ ପଡ଼ିଥିବା ସ୍ଥାନ ମାନଙ୍କରେ ସମଗ୍ର ଭୂଖଣ୍ଡରେ ୬୪ ଶକ୍ତିପୀଠ ଓ ଉପପୀଠ ମାନଙ୍କର ସୃଷ୍ଟି ହୋଇଥିଲା । ଅବଶେଷରେ କୈଳାସ ଗମନକରି ଶିବ ଉଗ୍ର ତପସ୍ୟାରେ ନିମଗ୍ନ ହୋଇଥିଲେ । ସତୀ ହିମାଳୟ ଗୃହରେ ମେନକା ଗର୍ଭରୁ ପାର୍ବତୀ ନାମରେ ଜନ୍ମ ହେବାପରେ ଶିବଙ୍କୁ ପୁନର୍ବାର ପତିରୂପେ ପ୍ରାପ୍ତ ହେବା ପାଇଁ ମାନସରୋବରରେ କଠୋର ତପଷରଣ କରି ଶିବଙ୍କୁ ପ୍ରାପ୍ତ ହୋଇଥିଲେ । ପୁରାଣ ମାନଙ୍କରେ ବର୍ଣ୍ଣିତ ସମସ୍ତ ଶିବକଥା ଏହି କୈଳାସ ପର୍ବତ ସହିତ ଜଡ଼ିତ । ତେଣୁ ଭାରତୀୟଙ୍କ ହୃଦୟରେ ରହିଛି କୈଳାସଧାମ ପ୍ରତି ଜନ୍ମଜାତ ବ୍ୟାମୋହ ଓ ଭାବାବେଗ । ଭାରତୀୟ ସଂସ୍କୃତିରେ ଏହି କୈଳାସଶୃଙ୍ଗର ଅବିଚ୍ଛେଦ୍ୟ ସଂପର୍କ ଆବହମାନ କାଳରୁ ବିଦ୍ୟମାନ । କୌଣସି ଭାରତୀୟ କେବେ ଅନୁଭବ କରି ଆସନ୍ତି ଯେ ମାନସରୋବର, କୈଳାସ ଓ ସେସବୁର ଅବସ୍ଥିତି ଦେଶ ତିବ୍ବତ ଭାରତୀୟମାନଙ୍କର ପୁଣ୍ୟ ଦେବଭୂମି ଓ ମୋକ୍ଷଭୂମି । ତେଣୁ ତିବ୍ବତ ଭାରତୀୟମାନଙ୍କର ମନ ଓ ହୃଦୟରେ ଭକ୍ତି ଓ ଶ୍ରଦ୍ଧାସହିତ ଅଧିଷ୍ଠିତ, ସେଭୂମି ସେମାନଙ୍କ ପାଇଁ ପରଦେଶ ନୁହେଁ, ଆପଣାର ପ୍ରିୟ ପବିତ୍ର ଦେଶ ।

ବସ୍ତୁତଃ କୈଳାସ ପର୍ବତ ହେଉଛି ବିଶ୍ୱର ବୃହତ୍ତମ ପର୍ବତଶ୍ରେଣୀ ହିମାଳୟ ମଧ୍ୟରେ ଚିର ତୁଷାରଖଚିତ ସ୍ୱର୍ଣ୍ଣ ମୁକୁଟ ଶୋଭିତ ରାଜକୀୟ ଗାମ୍ଭୀର୍ଯ୍ୟରେ ଅନ୍ତରୀକ୍ଷ ଭେଦକରି ମୌନ ବିଦ୍ୟମାନ । କୈଳାସର ଦିଗନ୍ତ ବିସ୍ତୀର୍ଣ୍ଣ ଗରୱାଲ ଆଦି ପର୍ବତ ଶ୍ରେଣୀ ମଧ୍ୟରେ ଉର୍ବଶୀ-ପୁରୁରବାଙ୍କର ପ୍ରଣୟ ସଂପର୍କ ସାର୍ଥକତା ଲଭି ଥିଲା । ନୃଲୋକ ଓ ଦେବଲୋକ ମଧ୍ୟରେ ପ୍ରଣୟ ସମ୍ବନ୍ଧ ସେତୁ ନିର୍ମାଣରେ ଏହି ପର୍ବତର ଥିଲା ଅନନ୍ୟ

ଭୂମିକା । ସରସ୍ୱତୀ, ସିନ୍ଧୁ, ଶତଦ୍ରୁ, ବ୍ରହ୍ମପୁତ୍ରାଦି ଚିରସ୍ରୋତା ନଦୀମାନଙ୍କର ଉତ୍ପତ୍ତି ପାଇଁ ଏହି କୈଳାସର ତୁଷାର ପ୍ରବହମାନ ହିଁ ହିମାବର୍ତ୍ତନର ପୂର୍ବକାଳରୁ ଅନୁକୂଳ ସୁଯୋଗ ସୃଷ୍ଟି କରିଥିଲେ । ଜୈନମାନଙ୍କର ଏହା ହେଉଛି ପବିତ୍ର ଅଷ୍ଟପଦ ପର୍ବତ ଓ ବେଦ ପୁରାଣାଦିରେ ଏହା ହେମକୂଟ ଗିରି ନାମରେ ଖ୍ୟାତ । ପାଣ୍ଡବମାନେ ବନବାସ କାଳରେ ଏଠାରେ କିଛିକାଳ ଅବସ୍ଥାନ କରି ଏହାର ଶୋଭାବିଭବ ଉପଭୋଗ କରିଥିଲେ । (ମ.ଭା.ବ.ପ. ୧୪୪, ୧୫୬, ବ୍ରହ୍ମାଣ୍ଡ ପୃ-୫୧ ଅଧ୍ୟାତ୍ମ ପ୍ରଭୃତି) ।

ଏହି ପଥଦେଇ ପ୍ରଥମ ବୌଦ୍ଧ ଭିକ୍ଷୁ ଖ୍ରୀ. ୬ଷ୍ଠ ଶତାବ୍ଦୀରେ ଚୀନଦେଶ ଯାତ୍ରା କରି ସେଠାରେ ସଦ୍‌ଧର୍ମ ପ୍ରଚାର କରିଥିଲେ । ସେହିକାଳରୁ ତିବ୍ବତ ହୋଇଆସିଛି ବୌଦ୍ଧଧର୍ମର ଏକ ପ୍ରଧାନ ପ୍ରଚାର କେନ୍ଦ୍ର ଓ ଯୁଗଯୁଗଧରି ବୌଦ୍ଧଧର୍ମର ବିକାଶ ଧାରା ଏଠାରେ ସାଧିତ ହୋଇଛି । ତାନ୍ତ୍ରିକ ଶାକ୍ତ, ପାଶୁପତ ମତ ସହିତ ସମ୍ମିଶ୍ରିତ ହୋଇଯାଇ ଯୋଗାଚାର ପ୍ରଧାନ ବୌଦ୍ଧଧର୍ମ ଏଠାରେ ସ୍ୱତନ୍ତ୍ର ଏକ ସ୍ଥାନ ଗ୍ରହଣ କରିଆସିଛି । ମହାଯାନର ପରବର୍ତ୍ତୀ କାଳୀନ ବଜ୍ରଯାନ-ସହଜଯାନ ଓ କାଳଚକ୍ରଯାନ ସାଧନ ଯୁଗରେ ବହୁ ଭିକ୍ଷୁ ଓ ଲାମା ଭାରତ ବର୍ଷକୁ ତୀର୍ଥାଟନରେ ଆସିଥିବା ବେଳେ ଓଡ଼ିଶାର ବୌଦ୍ଧପୀଠ ମାନଙ୍କ ସମ୍ବନ୍ଧରେ ଓ ପ୍ରାଚୀନ ବୌଦ୍ଧ ସାଧକମାନଙ୍କ ସମ୍ବନ୍ଧରେ ଅତି ମୂଲ୍ୟବାନ ଦୁର୍ଲ୍ଲଭ ବିବରଣୀ ମାନ ଲିପିବଦ୍ଧ କରି ଯାଇଛନ୍ତି । ସେସବୁ ମଧ୍ୟରୁ 'ପାଗ୍‌ସାମ ଯାନ ଜାଙ୍ଗ' ଓ ଲାମା ତାରାନାଥଙ୍କ ରହସ୍ୟଗାଥା ପ୍ରଭୃତି ବିଖ୍ୟାତ ।

ଭାରତ ଓ ତିବ୍ବତ ଏକ ପରିବାରର ଅନ୍ତର୍ଭୁକ୍ତ ଥିବାର ଇତିହାସ ଯୁଗ ଯୁଗ ଧରି ପ୍ରତ୍ୟକ୍ଷ କରି ଆସିଅଛି । ଏହା ଭାରତର ଉତ୍ତର ସୀମାବର୍ତ୍ତୀ ହିମାଳୟ ଉପରେ ଅବସ୍ଥିତ ଏହି ଦେଶରେ ହିମାବର୍ତ୍ତ ପୂର୍ବଯୁଗରେ ସ୍ୱାୟଂଭୁବ ମନୁଙ୍କ ରାଜସ୍ୱକାଳରେ ବେଦ ମନ୍ତ୍ର ମାନଙ୍କର ରଚନା ଆରମ୍ଭ ହୋଇଥିବାର ନାରାୟଣ ପାବଗୀଙ୍କ ପରି ପ୍ରସିଦ୍ଧ ମହାରାଷ୍ଟ୍ର ପଣ୍ଡିତ ମାନଙ୍କର ମତ, ଯଦି ଓ ବୈଦିକ ରଚନାମାନ ସର୍ବାଧିକ ସଂଖ୍ୟାରେ ସରସ୍ୱତୀ ଅବବାହିକାରେ ଥିବା ପଞ୍ଜାବ, ରାଜସ୍ଥାନ ଓ ହରିଆନାରେ ରଚିତ ହୋଇଥିଲା ପରବର୍ତ୍ତୀ ମନ୍ୱନ୍ତର ମାନଙ୍କରେ ତିବ୍ବତ ଓ ଭାରତ ମଧ୍ୟରେ ଥିଲା ଅବାଧ ମୁକ୍ତତୀର୍ଥଯାତ୍ରା । ବାଣିଜ୍ୟ ଓ ପର୍ଯ୍ୟଟନ, ଯଦିଓ ଯାତ୍ରା ପଥଥିଲା ଦୁର୍ଗମ ବିପଦ ଶଙ୍କୁଳ ସଂକୀର୍ଣ୍ଣ ଗିରିପଥ ତଥାପି ଉଭୟ ଦେଶର ସଂବନ୍ଧକୁ ନିବିଡ କରିବା ଦିଗରେ ଉଭୟ ଦେଶର ଲୋକେ ଏହି ଯାତ୍ରାକୁ ଅବ୍ୟାହତ ରଖିଥିଲେ ।

ଭାରତର ସ୍ୱାଧୀନତା ପୂର୍ବରୁ ଭାରତ ଓ ଚୀନ ପରି ଦୁଇ ବିରାଟ ଦେଶ ମଧ୍ୟରେ ତିବ୍ବତ ଏକ ସାର୍ବଭୌମ ସ୍ୱାଧୀନ ବଫର ଷ୍ଟେଟ ଭାବରେ ବିବେଚିତ ହେଉଥିଲା ।

ଯୁଗଯୁଗଧରି ସ୍ୱାଧୀନତା ଉପଭୋଗ କରି ଆସିଥିବା ଏହି ସାର୍ବଭୌମ ରାଷ୍ଟ୍ର

ଉପରେ ହିଂସ୍ର ଆକ୍ରମଣ କରି କମ୍ୟୁନିଷ୍ଟ ଚୀନର ସେନାବାହିନୀ ସହସ୍ର ସହସ୍ର ନିରୀହ ଧର୍ମପ୍ରାଣ ଜନତାଙ୍କୁ ନିର୍ମମ ସଂହାର କଲେ । ସେମାନଙ୍କର ସମସ୍ତ ସ୍ୱାଧୀନତା ଓ ସାର୍ବଭୌମତ୍ୱକୁ ଧ୍ୱଂସକରି ସେ ଦେଶରେ ଭୟ ଓ ସନ୍ତ୍ରାସର ଶାସନ ଚଳାଇ ଆସିଛନ୍ତି । ଆପଣାର ଜନ୍ମଭୂମିରେ ବଞ୍ଚିରହିବାର ସ୍ୱାଭିମାନ ଓ ଆନନ୍ଦାନୁଭୂତି ହରାଇ ଲକ୍ଷ ଲକ୍ଷ ସଂଖ୍ୟାରେ ତିବ୍ବତବାସୀ ଜନତା ନିଜ ସ୍ୱଜନ ଓ ପ୍ରତିବେଶୀମାନଙ୍କ ଠାରୁ ପରସ୍ପର ବିଚ୍ଛିନ୍ନ ହୋଇ ଉଦ୍‌ବାସ୍ତୁ, ସର୍ବହରା ଭାବରେ ପ୍ରାଣରକ୍ଷା ପାଇଁ ବିଭିନ୍ନ ଦେଶକୁ ପଳାୟନ କଲାବେଳେ ବହୁଭାଗ ସେମାନଙ୍କର ସ୍ୱପରିବାର ଭାବରେ ପରିଚିତ ପାରମ୍ପରିକ ପ୍ରତିବେଶୀ ଭାରତୀୟମାନଙ୍କର ଦ୍ୱାରସ୍ଥ ହେଲେ । ଭାରତ ସରକାର ଯଥାସାଧ୍ୟ ଉଦ୍ୟମ କରି ସେମାନଙ୍କୁ ନାନାସ୍ଥାନରେ ଥଇଥାନ କରାଇଲେ । ତିବ୍ବତୀୟ ମାନଙ୍କର ଧର୍ମଗୁରୁ ଲାମାମାନଙ୍କ ମଧ୍ୟରୁ ମହାମାନ୍ୟ ଦଲାଇ ଲାମା ମଧ୍ୟ ଭାରତରେ ଶରଣାର୍ଥୀ ଭାବରେ ଜୀବନ ଯାପନ କରି ତାଙ୍କର ସ୍ୱଦେଶବାସୀ ପଳାତକ ଆଶ୍ରୟପ୍ରାର୍ଥୀ ମାନଙ୍କ ମଧ୍ୟରେ ଆଶ୍ୱସନା ଦେଇ ମନୋବଳ ଦୃଢ଼ ରଖିବାକୁ ଉଦ୍ୟମ କରି ଆସୁଛନ୍ତି । ଶକ୍ତିଶାଳୀ ଏକଛତ୍ରବାଦୀ କମୁନିଷ୍ଟ ଚୀନ ତିବ୍ବତରେ ଆପଣାର ଗୁପ୍ତଚର ଜାଲ ବିସ୍ତାର କରି ସେଠାରେ ଥିବା ବାସିନ୍ଦାଙ୍କୁ ଭୀତ ସଂତ୍ରସ୍ତ କରି ରଖିଛନ୍ତି ।

କିନ୍ତୁ ଦୁର୍ଭାଗ୍ୟର କଥା ଭାରତର ପାରମ୍ପରିକ ପ୍ରତିବେଶୀ ଓ ଭାରତର ପୁଣ୍ୟଭୂମି ଭାବେ ଯୁଗଯୁଗଧରି ବିବେଚିତ ତିବ୍ବତରେ ଚୀନ ଏପରି ନାରକୀୟ ଲୀଳା ଘଟାଇବା ବେଳେ ଚୀନକୁ ଭାଇଭାବରେ ଗଭୀର ଶ୍ରଦ୍ଧା ଓ ସମର୍ଥନ ଦେଇ ଆସୁଥିବା ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ ଚୀନର ଏହି ହିଂସ୍ର ପଶୁସୁଲଭ କାର୍ଯ୍ୟର ଦୃଢ଼ ପ୍ରତିବାଦ କରିବା ପରିବର୍ତ୍ତେ ବରଂ ଏହାକୁ ତିବ୍ବତରେ ଚୀନର ଅଧିକାରକୁ ସ୍ୱୀକାର କରିଗଲେ । ନେହେରୁଙ୍କର ଏହି ମନୋଭାବ ଥିଲା ଏକ ଅତ୍ୟନ୍ତ ତୋଷାମଦି ସନ୍ତୁଷ୍ଟୀକରଣ ମନୋବୃତ୍ତି । ଯାହାକୁ ଭାରତର ଜନସାଧାରଣ ଆଦୌ ସମର୍ଥନ କରି ପାରିନଥିଲେ । ତିବ୍ବତ ଭଳି ସୁପ୍ରାଚୀନ ଏକ ବୌଦ୍ଧଧର୍ମାବଲମ୍ବୀ ମାନଙ୍କର ଦେଶରେ ଏପରି ରାଜନୈତିକ, ସାଂସ୍କୃତିକ ଓ ସାମାଜିକ ବିପର୍ଯ୍ୟୟ ଭାରତବାସୀଙ୍କ ହୃଦୟରେ ଭବ୍ୟ ସମ୍ବର୍ଦ୍ଧନା ପାଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିବା ଚୀନର ପ୍ରଧାନମନ୍ତ୍ରୀ ଭାରତର ଇଚ୍ଛାଶକ୍ତି ଓ ମାନସିକ ଦୁର୍ବଳତାକୁ ଆକଳନକରି ଅଳ୍ପକାଳ ମଧ୍ୟରେ ଭାରତ ଉପରେ ଉତ୍ତରପୂର୍ବ ଓ ଉତ୍ତର ପଶ୍ଚିମ ସୀମାନ୍ତରେ ଅତର୍କିତ ଆକ୍ରମଣ କଲେ । ଭାରତର ସହସ୍ର ସହସ୍ର ରାଷ୍ଟ୍ରଭକ୍ତ ସୈନିକ ସୀମାନ୍ତରେ ଆତ୍ମବଳି ଦେଲେ ଓ ନିରୁପାୟ ପ୍ରଧାନମନ୍ତ୍ରୀ ନେହେରୁ ଭାରତର ବିପର୍ଯ୍ୟୟ ଓ ଚୀନର କପଟତାରେ ବିଦୀର୍ଣ୍ଣ ହୃଦୟ ହୋଇ ଆପଣାକୃତକର୍ମର ଅନୁଶୀଳନ ବେଳେ ଆତ୍ମକୃତ କୂଟନୈତିକ ତଥା ପ୍ରଶାସନିକ ଭ୍ରାନ୍ତିର ବିକଟ ମୂର୍ତ୍ତି ଦେଖି ବିଚଳିତ

ହୋଇ ପଡ଼ିଥିଲେ । ଭାରତର ଉତ୍ତର ସୀମାକୁ ଛେଦନ କରି ଭାରତର ହଜାର ହଜାର ବର୍ଗ ମାଇଲବିଶିଷ୍ଟ ପବିତ୍ର ଭୂଭାଗକୁ ଅଦ୍ୟାବଧି ଚୀନ ଅଧିକାର କରିନେଇ ସେଠାରେ ଭବିଷ୍ୟତ ଯୁଦ୍ଧ ପାଇଁ ରାସ୍ତାନିର୍ମାଣ, କ୍ଷେପଣାସ୍ତ୍ର ଉତ୍କ୍ଷେପଣ କେନ୍ଦ୍ର ମାନଙ୍କୁ ଭାରତକୁ ଲକ୍ଷ୍ୟବିନ୍ଦୁ କରି ପ୍ରସ୍ତୁତ ରଖିବା ସହିତ ସେନା ଛାଉଣିମାନ ସୁଦୃଢ଼ କରି ରଖିଅଛି ।

କମ୍ୟୁନିଷ୍ଟ ଚୀନର ତିବ୍ବତ ଆକ୍ରମଣ ଓ ଅଧିକାର ଏବଂ ଭାଇପଣିଆର ଦ୍ୱାହି ଦେଇ ଭାରତ ଆକ୍ରମଣ ଓ ଏକ ବିସ୍ତୀର୍ଣ୍ଣ ଭୂଖଣ୍ଡର ଅଧିକାର ଥିଲା ଭାରତର ଗଣତାନ୍ତ୍ରିକ ଆଦର୍ଶ ଉପରେ ମାଓବାଦୀ କମ୍ୟୁନିଷ୍ଟ ଚୀନର ନଗ୍ନ ବର୍ବର ଆଚରଣ । ଅର୍ଥନୈତିକ ବିକାଶ ପାଇଁ ପ୍ରତିରକ୍ଷା କ୍ଷେତ୍ରକୁ ଅବହେଳା କରାଯିବାରେ ପଣ୍ଡିତ ନେହେରୁଙ୍କର ଆତ୍ମସନ୍ତୋଷଥିଲା ଭାରତର ସହାବସ୍ଥାନ ନୀତିଯୋଗୁ ଭାରତ ଉପରେ କାହାରି ତରଫରୁ ଯୁଦ୍ଧର ଆଶଙ୍କାହୀନତା କିନ୍ତୁ କମ୍ୟୁନିଜମ ଏହି ସ୍ୱପ୍ନବିଳାସର ବାସ୍ତବ ମୂଲ୍ୟହୀନତା ପ୍ରମାଣିତ ପ୍ରଥମେ ହେଲା ଭାରତର ପ୍ରତିବେଶୀ ତିବ୍ବତ ଉପରେ ଚୀନର ବଳପୂର୍ବକ ଅଧିକାର । ଏହାର ଅଳ୍ପକାଳ ପରେ ଭାରତ ଆକ୍ରମଣ ଓ ସୀମାନ୍ତ ଅଧିକାର କରିବା ପରେ ନେହେରୁଜୀଙ୍କର ବୁଦ୍ଧି ଉଦୟ ହୋଇଥିଲା । ସେ ତାଙ୍କର ପ୍ରତିରକ୍ଷା ଦାୟିତ୍ୱରୁ ଭି.କେ. କୃଷ୍ଣମେନନଙ୍କୁ ବହିଷ୍କାର କରିଦେଲେ ଓ ମନ୍ତ୍ରୀମଣ୍ଡଳରେ ତଥା ପ୍ରଶାସନରେ କେତେକ ପରିବର୍ତ୍ତନ କରିନେଲେ । ଭାରତର ଜନଗଣଙ୍କ ମନରେ ନେହେରୁଙ୍କ ବିଚାରଧାରା ଓ କାର୍ଯ୍ୟଶୈଳୀରେ ପ୍ରବଳ ଅସନ୍ତୋଷ ସତ୍ତ୍ୱେ ରାଜନୈତିକ କ୍ଷେତ୍ରରେ ନେହେରୁଙ୍କର ଅଖଣ୍ଡ ପ୍ରଭାବ ହେତୁ କେହି ପ୍ରତ୍ୟକ୍ଷ ବିରୋଧ କରିନଥିଲେ । କିନ୍ତୁ ସନ୍ନ୍ୟାସ ନେଇ ହିମାଳୟରେ କଠୋର ତପସ୍ୟା ମଗ୍ନଥିବା ଆନାର୍କିଷ୍ଟ ପାର୍ଟିର ଜଣେ କ୍ରାନ୍ତିକାରୀ ଉଗ୍ରରାଷ୍ଟ୍ରଭକ୍ତ ସ୍ୱାମୀ ପ୍ରଣବାନନ୍ଦ ଚୀନଦ୍ୱାରା ତିବ୍ବତ ଅଧିକୃତ ହୋଇଯିବାରେ ଘୋର ବିଷର୍ଣ୍ଣ ବ୍ୟଥିତ ହୋଇ ଦିଲ୍ଲୀଠାରେ ନେହେରୁଙ୍କୁ ସାକ୍ଷାତ କରି ପ୍ରଚଣ୍ଡ କ୍ରୋଧପ୍ରକାଶ କରିଥିଲେ । ନେହେରୁ ତାଙ୍କର ରାଷ୍ଟ୍ରଭକ୍ତି ଓ ପ୍ରଧାନମନ୍ତ୍ରୀ ପଦ ପାଇଁ ଯୋଗ୍ୟତା ଉପରେ ପ୍ରଶ୍ନ କରିଥିଲେ ବୋଲି ସେ ପୁରୀର ଶ୍ୱେତଗଙ୍ଗ ଠାରେ ତାଙ୍କର ଅନୁରାଗୀ ଶିଷ୍ୟମାନଙ୍କୁ ଜଣାଇ ଥିଲେ । ସ୍ୱାମିଜୀଙ୍କଠାରୁ ଧର୍ମୀୟ ପ୍ରେରଣା ସହିତ ଭାରତମାତାଙ୍କୁ ମହାଶକ୍ତି ଦୁର୍ଗାଭାବରେ ଭକ୍ତି ସାଧନା ପାଇଁ ଉଦ୍‌ବୋଧନ ଲାଭ କରୁଥିବା ତାଙ୍କର ଜୀବନୀଲେଖକ ଶିଷ୍ୟମାନେ ଏକଥା ଲିପିବଦ୍ଧ କରିଥିବାର ଆମେ କିଛିବର୍ଷ ପୂର୍ବେ ପାଠ କରିଥିବାର ସୁଯୋଗ ପାଇଥିଲୁ । ସମ୍ଭବତଃ ଏହିପରି ଅଧ୍ୟାତ୍ମବାଦୀ ନିର୍ଭୀକ ରାଷ୍ଟ୍ରଭକ୍ତ ମାନଙ୍କର ମାନସିକତାକୁ ଉପଲବ୍ଧିକରି ନେହେରୁଜୀ ଆପଣାର ନୀତିରେ ପରିବର୍ତ୍ତନ ଘଟାଇଥିଲେ ମଧ୍ୟ ଚୀନ କବଳରୁ ଭାରତର ପବିତ୍ର ଉତ୍ତର ଭୂଖଣ୍ଡକୁ ମୁକ୍ତ କରାଯାଇ ପାରିନାହିଁ । ବିଶେଷତଃ ପ୍ରତିରକ୍ଷାକ୍ଷେତ୍ରରେ ଭାରତ ଅପେକ୍ଷା ଚୀନ ଅଧିକ ଶକ୍ତିଶାଳୀ । ତିବ୍ବତ ଅଧିକାର କରି ବର୍ତ୍ତମାନ ଭିନ୍ନ

ଉପାୟରେ ନେପାଳରେ ଅସ୍ଥିରତା ଓ ଅରାଜକତା ସୃଷ୍ଟି କରି ତାହାକୁ ଅଧିକାର କରିନେବା ପାଇଁ ମାଓବାଦୀମାନେ ସନ୍ତ୍ରାସବାଦ ଚଳାଇ ନରୀହ ଲୋକଙ୍କର ଧନଜୀବନ ନଷ୍ଟ କରୁଛନ୍ତି ଓ ଭାରତର ଉତ୍ତରପୂର୍ବ ରାଜ୍ୟ, ଝାଡ଼ଖଣ୍ଡ, ଛତିଶଗଡ଼, ଆନ୍ଧ୍ର ଓ ଓଡ଼ିଶାରେ ସେହି ଅସ୍ତ୍ରର ଶକ୍ତିଶାଳୀ ପ୍ରୟୋଗ ଜାରି ରଖିଛନ୍ତି । ତେଣୁ ଅଦ୍ୟାବଧି କମ୍ୟୁନିଷ୍ଟ ନେତାମାନେ ଭାରତ ସୀମାରେ ଚୀନର ବର୍ବର ଆକ୍ରମଣକୁ ସ୍ୱୀକାର କରନ୍ତି ନାହିଁ । ଅତଏବ ତିବ୍ବତ ଶରଣାର୍ଥୀମାନଙ୍କର ସମସ୍ୟା ପରି ଭାରତୀୟ ଲୋକମାନଙ୍କର ଯେ ଅନୁରୂପ ସମସ୍ୟା ଭବିଷ୍ୟତରେ ନହେବ, ତାହାକୁ ଅସ୍ୱୀକାର କରାଯାଇନପାରେ ।

କିନ୍ତୁ ରାଜ୍ୟହରା ଉଦ୍‌ବାସ୍ତୁ ସର୍ବତ୍ର ଅତ୍ୟାଚାରିତ ଇହୁଦୀମାନେ ଆପଣାର ରାଷ୍ଟ୍ରଭକ୍ତିକୁ ଉଜ୍ଜୀବିତ ରଖି ପ୍ରାୟ ଦୁଇ ହଜାର ବର୍ଷ ପରେ ଅନୁକୂଳ ରାଜନୈତିକ ସୁଯୋଗ ବଶତଃ ଅପହୃତ ସ୍ୱଜନ୍ମଭୂମି ଲାଭ କରି ବିଶ୍ୱରେ ଏକ ଶକ୍ତିଶାଳୀ ଜାତି ଭାବରେ ପ୍ରତିଭାତ ହୋଇଛନ୍ତି । ଅତଏବ ତିବ୍ବତୀୟ ମାନଙ୍କ ମଧ୍ୟରେ ଦୃଢ଼ ମନୋବଳ ସହିତ ସ୍ୱତନ୍ତ୍ର ଭୂମିର ସ୍ମୃତି ଓ ସଚେତନତା ହୁଏତ କେଉଁ ଏକ ଅଜ୍ଞାତ ଭବିଷ୍ୟତରେ ତାଙ୍କୁ ସ୍ୱଦେଶର ପ୍ରତ୍ୟାବର୍ତ୍ତନର ସୁଯୋଗ ଦେଇପାରେ । ଏ କ୍ଷେତ୍ରରେ ଭାରତୀୟମାନଙ୍କର ରହିଛି ଏକ ଦାୟିତ୍ୱପୂର୍ଣ୍ଣ ଭୂମିକା ।

"...from the point of view of national interests, the fact that Tibet is being annihilated cannot be for the good of India in the long run"

- Atal Behari Vajpayee

# ତିବ୍ବତ : କିଛି କଥା, କିଛି ବ୍ୟଥା

ଡକ୍ଟର ଗୋପାଳ କୃଷ୍ଣ ଶ୍ରୀଚନ୍ଦନ

ପ୍ରବେଶିକା ପରୀକ୍ଷା ପୂର୍ବ ଶ୍ରେଣୀଗୁଡ଼ିକରେ ଭୂଗୋଳ ପଢ଼ିଲାବେଳେ (୧୯୪୮-୫୨) ବର୍ତ୍ତମାନ ଇଂଲିଶରେ କଥିତ ତିବେତ୍ (Tibet)କୁ ତିବ୍ବତ ଭାବେ ଆମ୍ଭେମାନେ ଜାଣିଥିଲୁ । ଏହା ଭାରତର ଉତ୍ତରରେ ହିମାଳୟ ଆରପଟେ ଅବସ୍ଥିତ ଏକ ସ୍ୱାଧୀନ ରାଷ୍ଟ୍ର ଏବଂ ପୃଥିବୀର ଛାତ ରୂପେ ସେତେବେଳେ ବିଦିତ ଥିଲା । ପୃଥିବୀର ଉଚ୍ଚତମ (ପାମିର) ମାଳଭୂମିର ଅଂଶ ବିଶେଷ ହେତୁ ଏହାକୁ ଏପରି ଭାବେ ବର୍ଣ୍ଣିତ କରାଯାଏ । ଏହାର କ୍ଷେତ୍ରଫଳ: ୧୨୨୧୬୦୧ କିଲୋମିଟର (୪୭୧୬୬୦ ବର୍ଗମାଇଲ) । ୧୯୯୦ରେ ଏହାର ଲୋକ ସଂଖ୍ୟା : ୨୧୯୬୦୧୦; ରାଜଧାନୀ-ଲାସା (Lhasa) ।

ତିବ୍ବତର ଚାଇନିଜ୍ ନାମକରଣ ହେଉଛି - 'ଜିୟଙ୍ଗ ସ୍ୱୟଂ ଶାସିତ ଅଞ୍ଚଳ' (Xiyang Autonomous Region) ଯାହାକି ବର୍ତ୍ତମାନ ଚୀନଗଣରାଷ୍ଟ୍ରରେ ପଶ୍ଚିମ ଚୀନ୍ ଅନ୍ତର୍ଗତ ଏକ 'ପ୍ରଶାସନିକ ଅଞ୍ଚଳ' । ଏହାର ସୀମାକୁ ଭାରତ, ନେପାଳ, ଭୁଟାନ ଓ ବର୍ମା (ମ୍ୟାନ୍‌ମାର୍) ଲାଗି ରହିଛନ୍ତି । ହିମାଳୟ ଏବଂ କୁନ୍‌ଲୁନ୍ ପର୍ବତ ଶ୍ରେଣୀ ଦ୍ୱାରା ପରିବେଷ୍ଟିତ ଏହା ଏକ ଅତ୍ୟୁଚ୍ଚ ମାଳଭୂମି । ତିବ୍ବତ ମଧ୍ୟରେ ପ୍ରବାହିତ ନଦୀ କୂଳରେ ସହରଗୁଡ଼ିକ ଅବସ୍ଥିତ ଏବଂ ଅଧିବାସୀମାନେ ମୁଖ୍ୟତଃ କୃଷିଜୀବୀ । ମାଳଭୂମିରେ ଯାଯାବରମାନେ ଚମରୀ ଗାଈ ଏବଂ ସେହି ଶ୍ରେଣୀର ପଶୁମାନଙ୍କୁ ପାଳନ କରି ଜୀବିକା ନିର୍ବାହ କରନ୍ତି । ତିବ୍ବତ ମାଳଭୂମି ତିବ୍ବତର ଭୂତାତ୍ତ୍ୱିକ / ଭୌଗୋଳିକ ସରହଦ ସହିତ ସମାନ ପରିସୀମା ବିଶିଷ୍ଟ । ଏହା ସମୁଦ୍ର ପତ୍ତନରୁ ହାରାହାରି ୧୨୦୦୦ ଫୁଟ ଉଚ୍ଚରେ ଅବସ୍ଥିତ । ସମଗ୍ର ତିବ୍ବତ ମାଳଭୂମି ଅଞ୍ଚଳ ଖଣିଜ ସମ୍ପଦରେ ପରିପୂର୍ଣ୍ଣ । ଧାର୍ମିକ ନିଷେଧ ହେତୁ ୧୯୫୦ ପରବର୍ତ୍ତୀ ସମୟ ପର୍ଯ୍ୟନ୍ତ ଏହି ଖଣିଜ ସଂପଦ ଗୁଡ଼ିକର ଖନନ କାର୍ଯ୍ୟ କରାଯାଉନଥିଲା । ବୌଦ୍ଧ ଧର୍ମ ଦ୍ୱାରା ପ୍ରଭାବିତ କଳା ଏବଂ ହସ୍ତଶିଳ୍ପ ନିମନ୍ତେ ତିବ୍ବତର ପ୍ରସିଦ୍ଧି ଓ ସୁଖ୍ୟାତି ଅଛି ।

୭ମ ଶତାବ୍ଦୀରେ ତିବ୍ବତ ମାଳଭୂମି ଅଞ୍ଚଳରେ ଲାମା ପ୍ରଧାନ ବୌଦ୍ଧ ଧର୍ମ ପ୍ରବେଶ କରି ଏହାର ଇତିହାସ ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରି ଆସିଛି । ତ୍ରୟୋଦଶ ଶତାବ୍ଦୀରେ ତିବ୍ବତୀୟ ବୌଦ୍ଧଧର୍ମର ଲାମା (ମହନ୍ତ ବା ପୁରୋହିତ)ମାନେ ରାଜନୈତିକ କ୍ଷମତା ପ୍ରାପ୍ତ ହୋଇଥିଲେ । ବୌଦ୍ଧ ଧର୍ମାବଲମ୍ବୀ ଦିଗ୍ ବିଜୟୀ ସମ୍ରାଟ୍ କୁବ୍‌ଲାଇଖାନ୍ ପୂର୍ବ ତିବ୍ବତରେ

ତାଙ୍କର ବିଜିତ ଅଞ୍ଚଳ ଗୁଡ଼ିକର ଶାସନ ଦାୟିତ୍ୱ 'ଶାକ୍ୟ ଲାମା'ଙ୍କୁ ପ୍ରଦାନ କରିଥିଲେ । ପରବର୍ତ୍ତୀ ସମୟରେ ଆଞ୍ଚଳିକ ପ୍ରଶାସନିକ ଅନୈକ୍ୟର ପରିସମାପ୍ତି ଘଟି ପଞ୍ଚମ ଦଲାଇ ଲାମା ଖ୍ରୀ ୧୬୪୨ରେ ସମଗ୍ର ତିବ୍ବତର ଶାସନକର୍ତ୍ତା ହୋଇଥିଲେ । ମାତ୍ର ଖ୍ରୀ ୧୭୨୦ରେ ଚିନ୍‌ର କ୍ୱିଙ୍ଗ୍ ରାଜବଂଶ ତିବ୍ବତ ଉପରେ ନିଜର ନିୟନ୍ତ୍ରଣ ଜାରି କରିଥିଲେ, ଯାହାକି ଖ୍ରୀ ୧୯୧୧ରେ କ୍ୱିଙ୍ଗ୍ ରାଜତ୍ୱର ଅବସ୍ଥାନ ପର୍ଯ୍ୟନ୍ତ ବଳବତ୍ତର ଥିଲା । ତିବ୍ବତ ଦଲାଇ ଲାମାଙ୍କ କର୍ତ୍ତୃତ୍ୱରେ ସେତେବେଳେ ସ୍ୱାଧୀନତା ଘୋଷଣା କରିଥିଲା; ମାତ୍ର ୧୯୫୦ରେ ପୁନଶ୍ଚ ତିବ୍ବତକୁ ଚୀନ୍ ଅଧିକାର କରି ନେଇଥିଲା । ଅର୍ଥାତ୍ ୧୯୫୦ରେ ତିବ୍ବତ ଚୀନ୍‌ର ପ୍ରଭୁତ୍ୱ ନିକଟରେ ନିଜର ସାର୍ବଭୌମତ୍ୱ ହରାଇଥିଲା ।

ଏହି ଘଡ଼ିସନ୍ଧି ସମୟରେ, ଭାରତ ବର୍ଷର ବିଭାଜନ ଘଟି ୧୯୪୭ ଅଗଷ୍ଟ ପନ୍ଦରରେ ଭାରତ ସ୍ୱାଧୀନତା ଲାଭ କରିଥିଲା ଏବଂ ୧୯୫୦ରେ ଏକ ସାଧାରଣ ତନ୍ତ୍ର ରାଷ୍ଟ୍ରରେ ପରିଣତ ହୋଇଥିଲା । ପଣ୍ଡିତ ଜବାହରଲାଲ ନେହେରୁ ସ୍ୱାଧୀନ ସାଧାରଣତନ୍ତ୍ର ଭାରତର ପ୍ରଧାନମନ୍ତ୍ରୀ ଥାଇ ରାଷ୍ଟ୍ରର ବିଦେଶ ନୀତି ଦାୟିତ୍ୱରେ ଥିଲେ । ୧୯୫୦ରେ ଚୀନ୍ ତିବ୍ବତ ଉପରେ ନିଜର ସାର୍ବଭୌମତ୍ୱ ଜାହିର କରିବା ଘଟଣାକୁ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ସ୍ୱୀକୃତି ଦେଇଥିଲେ । ଏହା ଏକ ଭୁଲ୍ ନିଷ୍ପତ୍ତି ବୋଲି ଐତିହାସିକ ତଥା ରାଷ୍ଟ୍ରନୀତିଜ୍ଞମାନେ ମତ ଦିଅନ୍ତି ।

କାରଣ ୧୯୫୦ରେ ଚୀନ୍‌ର ସାମରିକ ଆକ୍ରମଣ ପୂର୍ବରୁ ତିବ୍ବତ ଏକ ସ୍ୱାଧୀନ ରାଷ୍ଟ୍ରଥିଲା ଏବଂ ଏହାର ସରକାର ରାଜଧାନୀ ଲାସାରେ ହିଁ ଅବସ୍ଥାପିତ ଥିଲା । ତିବ୍ବତର ନିଜସ୍ୱ ନିର୍ଦ୍ଧାରିତ ଆଞ୍ଚଳିକ ଅବସ୍ଥିତି ଥିଲା । ଏଥିରେ ୬୦ ଲକ୍ଷ ନିର୍ଦ୍ଦିଷ୍ଟ ଶ୍ରେଣୀର ବ୍ୟକ୍ତି ବାସକରୁଥିଲେ । ଭାରତ ସମେତ ବହୁତ ରାଷ୍ଟ୍ରର 'କୂଟନୈତିକ ମିଶନ୍' ଲାସାରେ ଅବସ୍ଥାପିତ ହୋଇଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ତିବ୍ବତ ନିଜର ନିରପେକ୍ଷତା ରକ୍ଷା କରିଥିଲା । ବଳପୂର୍ବକ ଚୀନ୍ ଅଧିକାର କରିନେବା ପୂର୍ବରୁ ଚୀନ୍, ମ୍ୟାନ୍‌ମାର (ବର୍ମା), ଭାରତ, ନେପାଳ, ଭୁଟାନ ଓ ସିକିମ୍ ଏହାର ସୀମାକୁ ଘେରି ରହିଥିଲେ । ପରବର୍ତ୍ତୀ ସମୟରେ ସିକ୍କିମ୍ ଭାରତୀୟ ସାଧାରଣତନ୍ତ୍ରର ଏକ ଅଙ୍ଗରାଜ୍ୟରେ ପରିଣତ ହୋଇଛି ।

ତିବ୍ବତୀୟ ବୌଦ୍ଧ ଧର୍ମର ସ୍ୱାତନ୍ତ୍ର୍ୟ ଏବଂ ତିବ୍ବତୀୟ ରାଷ୍ଟ୍ରୀୟତା ସହିତ ଏହା ସମ୍ପର୍କ ସମ୍ବନ୍ଧରେ ଆଲୋଚନା କରିବା ସାଂପ୍ରତିକ ପରିପ୍ରେକ୍ଷୀରେ ସମୀଚୀନ ମନେହୁଏ । ତିବ୍ବତୀୟ ବୌଦ୍ଧ ଧର୍ମ / ଲାମାବାଦ 'ମହାଯାନ-ବୌଦ୍ଧ ଧର୍ମ' ର ଶାଖା ବିଶେଷ, ଯାହା ସପ୍ତମ ଶତାବ୍ଦୀରୁ ମଙ୍ଗୋଲିଆ ଓ ତିବ୍ବତରେ ପଚଳିତ । ମଙ୍ଗୋଲୀୟ ଭାଷାରେ 'ଦାଲାଇ' ଶବ୍ଦର ଅର୍ଥ ମହାସାଗର (Ocean) । ସୁତରାଂ ଦଲାଇ ଲାମା କହିଲେ ଲାମାମାନଙ୍କ ମଧ୍ୟରେ ମହାସାଗର ସଦୃଶ ଅର୍ଥାତ୍ ଶ୍ରେଷ୍ଠ ଓ ସର୍ବୋଚ୍ଚ ଅଟନ୍ତି । ଯେପରି ହିନ୍ଦୁ ଧର୍ମରେ 'ଶଙ୍କରାଚାର୍ଯ୍ୟ'ଙ୍କ ସ୍ଥାନ ।

ହିନ୍ଦୁଧର୍ମର ଆଚାର୍ଯ୍ୟ ବା ମହନ୍ତମାନଙ୍କ ମଧ୍ୟରେ ଚାରି ଶଙ୍କରାଚାର୍ଯ୍ୟଙ୍କ ସ୍ଥାନ ସର୍ବୋଚ୍ଚ । ତିବ୍ବତୀୟ ବୌଦ୍ଧ ଧର୍ମରେ ସେହିପରି ଦଲାଇଲାମାଙ୍କ ସ୍ଥାନ । ଦଲାଇଲାମା କେବଳ ସର୍ବୋଚ୍ଚ ଧର୍ମାଚାର୍ଯ୍ୟ ନୁହନ୍ତି, ସେ ମଧ୍ୟ ତିବ୍ବତର ରାଷ୍ଟ୍ର ତଥା ଶାସନ ମୁଖ୍ୟ । ଯେପରି ପୋପ୍ କ୍ୟାଥଲିକ୍ ଖ୍ରୀଷ୍ଟିଆନ୍ ଧର୍ମର ସର୍ବୋଚ୍ଚ ଧର୍ମାଚାର୍ଯ୍ୟ ସାଙ୍ଗକୁ କ୍ଷୁଦ୍ର ଭଟିକାନ୍ ସିଟିର ରାଷ୍ଟ୍ର ଓ ଶାସନ ମୁଖ୍ୟ ମଧ୍ୟ । ପୃଥିବୀରେ ପୋପ୍‌ଙ୍କୁ ବିଭିନ୍ନ ରାଷ୍ଟ୍ର ପରିଦର୍ଶନ ସମୟରେ ରାଷ୍ଟ୍ର ମୁଖ୍ୟ ସମ୍ମାନ ଦିଆଯାଏ । ତିବ୍ବତକୁ ଚୀନ ନିଜର ଅଙ୍ଗୀଭୂତ କରିବା ପୂର୍ବରୁ ଦଲାଇ ଲାମାଙ୍କ ସ୍ଥିତି ସେହିପରି ଥିଲା । ୭ମ ଶତାବ୍ଦୀରେ ଲାମାବାଦୀ ମହାଯାନୀ ବୌଦ୍ଧ ଧର୍ମ ପ୍ରବେଶ କରିବା ପୂର୍ବରୁ 'ବନ' (ପ୍ରାକ୍ ବୌଦ୍ଧୀୟ) ଧର୍ମ ପ୍ରଚଳିତ ଥିଲା; ଯାହାର ପ୍ରଭାବ ତିବ୍ବତୀୟ ବୌଦ୍ଧଧର୍ମରେ ପରିଲକ୍ଷିତ ହୁଏ ।

ଦଲାଇ ଲାମା ପଦବୀଟି ଖ୍ରୀ ୧୩୯୧ରେ ଆରମ୍ଭ ହୋଇଥିଲା । ପ୍ରଥମ ଦଲାଇ ଲାମା (ଖ୍ରୀ ୧୩୯୧-୧୪୭୪) ହେଉଛନ୍ତି 'ଡି'ଗେ-ହୁନ୍-ଗ୍ରୁବ-ପା' (D'Ge-hdun-grub-pa) । ପଞ୍ଚମ ଦଲାଇଲାମା 'Ngag-dbang-blo-lezang' (ଖ୍ରୀ୧୬୧୭-୧୬୮୨) ତାଙ୍କର ପ୍ରଭୁତ୍ୱ ସମଗ୍ର ତିବ୍ବତରେ ପ୍ରସାରିତ କରି ଏହାକୁ ଏକ ଧର୍ମୀୟ ରାଷ୍ଟ୍ର (Theocratic state)ରେ ପରିଣତ କରିଥିଲେ । ଏହି ରାଷ୍ଟ୍ରୀୟ ବ୍ୟବସ୍ଥା ଚତୁର୍ଦ୍ଦଶ ଦଲାଇଲାମାଙ୍କ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ଖ୍ରୀ ୧୯୫୧ରେ ତିବ୍ବତ 'ଚୀନ୍ ଗଣସାଧାରଣ ତନ୍ତ୍ର' (Chinese People's Republic)ର ଅଙ୍ଗବିଶେଷ ହେବାପରେ ଚୀନ୍‌ର ଅତ୍ୟାଚାର ଓ ବଳପ୍ରୟୋଗ ଯୋଗୁଁ ଖ୍ରୀ ୧୯୫୯ରେ ବର୍ତ୍ତମାନର (୧୪ଶ) ଦଲାଇଲାମା ଏକ ଲକ୍ଷ ତିବ୍ବତୀୟଙ୍କ ସହ ତିବ୍ବତର ରାଜଧାନୀ ଲାସା ପରିତ୍ୟାଗ କରି ଭାରତର ଧର୍ମଶାଳାଠାରେ ଅବସ୍ଥାନ କରିଆସୁଛନ୍ତି ।

ଲାମାବାଦୀ (ତିବ୍ବତୀୟ) ବୌଦ୍ଧଧର୍ମରେ 'ପୁନର୍ଜନ୍ମିତ' ମାନଙ୍କ ମଧ୍ୟରେ ଦଲାଇଲାମା ହିଁ ସର୍ବୋଚ୍ଚ ଧର୍ମୀୟ ସତ୍ତାଧାରୀ ଅଟନ୍ତି । ସେ ପୂଜ୍ୟ ଅବଲୋକିତେଶ୍ୱର-ବୋଧିସତ୍ତ୍ୱଙ୍କର ଜୀବନ୍ତ ପ୍ରତିମା / 'ଚଳନ୍ତି ବିଷ୍ଣୁ' ବା (ଶରୀରଧାରୀ ଈଶ୍ୱର) ଭଗବାନ୍ ଅଟନ୍ତି । ତିବ୍ବତୀୟ ଧର୍ମାବଲମ୍ବୀମାନଙ୍କ ପାଇଁ ସେ ସର୍ବୋଚ୍ଚ ତଥା ପରମ ଧର୍ମୀୟ ଅବତାର ବା କର୍ତ୍ତା ଅଟନ୍ତି । 'ଜୀବନ୍ତ ଭଗବାନ୍ ବୁଦ୍ଧ'ଙ୍କ ସଦୃଶ ଦଲାଇଲାମାଙ୍କ ମୃତ୍ୟୁରେ ନୂତନ ଦଲାଇଲାମାଙ୍କ ଅବତାର ବା ଧରାବତରଣ ପ୍ରକ୍ରିୟା ଆରମ୍ଭ ହୁଏ । ଉଚ୍ଚକ୍ଷମତାସମ୍ପନ୍ନ ଲାମାମାନଙ୍କ 'ସ୍ୱତନ୍ତ୍ର ପରିଷଦ' ଦଲାଇଲାମାଙ୍କ ମୃତ୍ୟୁର ଏକ ବର୍ଷ ମଧ୍ୟରେ ଜନ୍ମ ହୋଇଥିବା (ନବଜାତ) ଶିଶୁମାନଙ୍କ ମଧ୍ୟରୁ ଦିବଂଗତ ଦଲାଇଲାମାଙ୍କର (ଐଶ୍ୱରୀୟ) ଦିବ୍ୟଗୁଣ ପ୍ରଯୁକ୍ତ ଶିଶୁକୁ ହିଁ ଦଲାଇଲାମାଙ୍କର ପୁନର୍ଜନ୍ମିତ ଅବତାର ରୂପେ ମନୋନୀତ କରିଥାନ୍ତି । ଏହି ଶିଶୁ ବା ବାଳକଙ୍କୁ ଏକ ମଠକୁ ନିଆଯାଇ ଆବଶ୍ୟକ ତାଲିମ ପ୍ରଦାନ କରାଯାଏ । ନୂତନ ଦଲାଇଲାମା ସାବାଳକ ହେବା

ପର୍ଯ୍ୟନ୍ତ ତାଙ୍କର ଧର୍ମୀୟ କାର୍ଯ୍ୟକଳାପ ଜଣେ ପ୍ରତିନିଧି (regent)ଙ୍କ ଦ୍ୱାରା ନିର୍ବାହିତ ହୁଏ ।

ତିବ୍ବତୀୟ ବୌଦ୍ଧ ଧର୍ମରେ ଦଲାଇଲାମାଙ୍କ ତଳକୁ ପାଞ୍ଚେନ ଲାମା'ଙ୍କ ସ୍ଥାନ । ତିବ୍ବତର ଝିକତ୍‌ସେ ଠାରେ ଅବସ୍ଥିତ ତଷିଲ୍‌ହୁମ୍ପୋ ମଠର ମୁଖ୍ୟ ପଦବୀଧାରୀଙ୍କୁ 'ପାଞ୍ଚେନଲାମା' କୁହାଯାଏ ଏବଂ ତିବ୍ବତୀୟ ବୌଦ୍ଧ ଧର୍ମରେ ତାଙ୍କର ସ୍ଥାନ ଦ୍ୱିତୀୟ । ସେ ଅମିତାଭ-ବୁଦ୍ଧଙ୍କର ଅବତାର ରୂପେ ଗୃହୀତ । ଅମିତାଭ ଅର୍ଥ 'ଅପରିମିତ ଆଲୋକ'ର ବୁଦ୍ଧ । ଦଲାଇଲାମା ଅବିଲୋକିତେଶ୍ୱର ବୋଧିସତ୍ତ୍ୱଙ୍କର ଜୀବନ୍ତ ବିଗ୍ରହ ହେଲେ, ପାଞ୍ଚେନ ଲାମା 'ଅମିତାଭ ବୁଦ୍ଧ (ବୋଧିସତ୍ତ୍ୱ)'ଙ୍କର ଅବତାର ଅଟନ୍ତି । ତିବ୍ବତକୁ ଚୀନ୍ ଅଧିକାର କରିନେବା ପରେ ମଧ୍ୟ ଖ୍ରୀ ୧୯୫୨ରେ ଅଧିଷ୍ଠିତ ପାଞ୍ଚେନ ଲାମା ତଷିଲ୍ ହୁମ୍ପୋ ମଠର ଅବସ୍ଥାନ କରି ୧୯୮୯ରେ ମୃତ୍ୟୁବରଣ କରିଥିଲେ । ୧୯୯୫ରେ ଦଲାଇଲାମା ଗେଣ୍ଡନ୍ ଚୋଇକୈ ନ୍ୟିମାଙ୍କୁ (Gendun Choekyi Nyima)ଙ୍କୁ ୧୯୮୯ ଠାରୁ ପାଞ୍ଚେନ ଲାମାଙ୍କର ପୁନରାବତାର ରୂପେ ନାମିତ କରିଥିଲେ । ମାତ୍ର ଚୀନ୍ କର୍ତ୍ତୃପକ୍ଷ ନୂତନ ପାଞ୍ଚେନ ଲାମାଙ୍କୁ ଅବରୁଦ୍ଧ କରି ରଖିଥିଲେ ଏବଂ ଗ୍ୟାଙ୍କାଁ ନୋର୍ବୁ (Gyaincain Norbu)ଙ୍କୁ ଖ୍ରୀ ୧୯୮୯ଠାରୁ ପାଞ୍ଚେନ ଲାମା ରୂପେ ତିବ୍ବତୀୟ ଧର୍ମାବଲମ୍ବୀମାନଙ୍କ ଉପରେ ଲଦି ଦେବା ପାଇଁ ଚେଷ୍ଟା କରିଥିଲେ ।

ତିବ୍ବତର ଆଭ୍ୟନ୍ତରୀଣ ରାଷ୍ଟ୍ରୀୟ ବ୍ୟାପରରେ ବୌଦ୍ଧ ଧର୍ମୀୟ ନେତାମାନଙ୍କର ଅବିଚ୍ଛେଦ୍ୟ ସଂପର୍କ ଓ ଭୂମିକା ଥିବାରୁ ଚୀନ୍ କର୍ତ୍ତୃପକ୍ଷ ସେମାନଙ୍କୁ ନିଜ ଅକ୍ତିଆର ଓ ନିୟନ୍ତ୍ରଣରେ ରଖିବାକୁ ପ୍ରବଳ ଉଦ୍ୟମ କରି ଆସିଛନ୍ତି । କଠୋର ଶାସନ ଯୋଗୁଁ ଲକ୍ଷ ଲକ୍ଷ ଲୋକ ତିବ୍ବତ ଛାଡ଼ି ପଳାୟନ କରିଛନ୍ତି । ତିବ୍ବତର ପାରଂପରିକ ଶାସନର ପୀଠ ଥିଲା ଲାସାସ୍ଥ ମହାମାନ୍ୟ ଦଲାଇ ଲାମାଙ୍କ ପୋଟାଲା ରାଜ ପ୍ରାସାଦ । ଦେଶତ୍ୟାଗୀ ଦଲାଇ ଲାମା ତିବ୍ବତୀୟ ଚାରୋଟି ବୌଦ୍ଧ ସଂପ୍ରଦାୟ (ନ୍ୟିଙ୍ଗ୍‌ମା, ଶାକ୍ୟ, କାଗ୍ୟୁ ଓ ଗେଲୁଗ୍)ର ଧର୍ମୀୟ ଏବଂ ରାଷ୍ଟ୍ରୀୟ / ପ୍ରଶାସନିକ ମୁଖ୍ୟ ନେତା ଅଟନ୍ତି । ବର୍ତ୍ତମାନର ଦଲାଇଲାମା ଗେଲୁଗ୍‌ବୌଦ୍ଧ ଗୋଷ୍ଠୀ (ସଂପ୍ରଦାୟ)ର । ପୂର୍ବରୁ ସୂଚନା ଦିଆଯାଇଛି, ତିବ୍ବତୀୟ ବୌଦ୍ଧମାନଙ୍କର ଦ୍ୱିତୀୟ (ସର୍ବୋଚ୍ଚ) ଗୁରୁ ପାଞ୍ଚେନ ଲାମାଙ୍କ ପଦବୀରେ ଦୁଇଜଣ ଅଧିଷ୍ଠିତ । ଆଉ ଜଣେ ଧର୍ମଗୁରୁ ହେଉଛନ୍ତି କାର୍ମାପା । ଷୋଡଶ କାର୍ମାପା ଦେଶ ପରିତ୍ୟାଗ କରି ସିକ୍କିମରେ ଏକ ମଠ (ରୁମ୍‌ଟେକ୍ ମୋନାଷ୍ଟେରି) ସ୍ଥାପନ କରି ଅବସ୍ଥାନ କରୁଥିଲେ । ଏହି ରୁମ୍‌ଟେ୍ ମଠରେ ତିବ୍ବତରୁ ଚୋରା ଲୁଚାରେ କେତେକ ଧ୍ୱଂସାବଶେଷ ଅଣାଯାଇ ସଂସ୍ଥାପିତ ହୋଇଛି । ତନ୍ମଧ୍ୟରୁ ବୌଦ୍ଧଦେବୀ ମାନଙ୍କ କେଶରୁ ନିର୍ମିତ 'କଳା ଟୋପି' ଅନ୍ୟତମ ।

ସପ୍ତଦଶ କାର୍ମାପା ହେଉଛନ୍ତି କାଗ୍ୟୁ ବୌଦ୍ଧ ସଂପ୍ରଦାୟର । ତାଙ୍କର ନିଯୁକ୍ତିକୁ ଉଭୟ ଦଲାଇଲାମା ଏବଂ ଚୀନ୍ ସରକାର ସ୍ୱୀକୃତି ପ୍ରଦାନ କରିଛନ୍ତି । ମାତ୍ର କାର୍ମାପା ପଦ ପାଇଁ ଅନ୍ୟ ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀ ମଧ୍ୟ ଅଛନ୍ତି । ତନ୍ମଧ୍ୟରୁ କାଲିଂପଙ୍ଗରେ ରହୁଥିବା ଥାଇ ଦୋର୍ଜି,

ଯାହାଙ୍କୁ ରୁମଟେକ୍ ମଠର ପ୍ରତିନିଧି (regent) ସମର୍ଥନ କରୁଛନ୍ତି । ଆଉ ଜଣେ ଦାଉଆ ସାଙ୍ଗ୍‌ପୋ ଦୋର୍ଜି, ଅନ୍ୟ ପ୍ରତିପକ୍ଷ ମାନଙ୍କ ଦ୍ୱାରା ସମର୍ଥିତ ଦାବୀଦାର । ପୂର୍ବରୁ କୁହାଯାଇଛି, ପାଞ୍ଚେନ୍ ଲାମା ପଦ ପାଇଁ ଦୁଇଜଣ ଦାବୀଦାର ଅଛନ୍ତି; ସେମାନଙ୍କ ମଧ୍ୟରୁ ଜଣଙ୍କୁ ବର୍ତ୍ତମାନର ଦଲାଇଲାମା ଏବଂ ଅନ୍ୟ ଜଣଙ୍କୁ ଚୀନ୍ ସରକାର୍ ନିଯୁକ୍ତି ଦେଇଛନ୍ତି । ଏହି ପରିଭାବେ ଦଲାଇଲାମାଙ୍କ ଅଧସ୍ତନ ବୌଦ୍ଧ ମଠାଧୀଶମାନଙ୍କ ନିଯୁକ୍ତି ନେଇ ଦଲାଇଲାମା ଓ ଚୀନ୍ ସରକାରଙ୍କ ମଧ୍ୟରେ ଟଣା ଓଟରା ଚାଲିଛି । ୧୭ଶ କାର୍ମାପା ମଧ୍ୟ ଇତି ମଧ୍ୟରେ ତିବ୍ଦତ ପରିତ୍ୟାଗ କରି ଭାରତ (ସିକ୍କିମ୍)ରେ ଆଶ୍ରୟ ଗ୍ରହଣ କରିଛନ୍ତି । ସିକ୍କିମ୍‌ର ରୁମଟେକ୍ ମଠର ଦେବୀମାନଙ୍କ କେଶ ନିର୍ମିତ ପବିତ୍ର କଳାଟୋପି ସଂଗ୍ରହ କରିବା ପାଇଁ ସପ୍ତଦଶ କାର୍ମାପା ଦେଶଛାଡ଼ି ଆସିଛନ୍ତି ବୋଲି ଚୀନ୍ କର୍ତ୍ତୃପକ୍ଷ କହୁଥିବାବେଳେ ପ୍ରକୃତରେ ତିବ୍ଦତରେ ଅବସ୍ଥାପିତ ଚୀନ୍ କର୍ତ୍ତୃପକ୍ଷଙ୍କ ଚାପ ସହ୍ୟ କରିନପାରି ଏହି ଧର୍ମଗୁରୁ ପଳାୟନ କରି ଆସିଛନ୍ତି ବୋଲି ଜନଶ୍ରୁତି । ଏହି ଆଳରେ ଚୀନ୍ ସିକ୍କିମ୍ ଅଧିକାର କରି ନେବାକୁ ଭିତିରି ଯୋଜନା କରୁଛି ବୋଲି ଆଶଙ୍କା କରାଯାଉଥିଲା । ତେବେ ନିକଟରେ ସିକ୍କିମ୍ ଭାରତର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ଚୀନ୍ ସ୍ୱୀକୃତି ଦେଇଥିବାରୁ ଏ ସମ୍ପର୍କରେ ଭାରତୀୟମାନଙ୍କ ମନରେ ଆଶ୍ୱସ୍ତି ଆସିଛି ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ ତିବ୍ଦତ ଚୀନ୍‌ଗଣରାଷ୍ଟ୍ରର ଅଂଶ ବିଶେଷ ବୋଲି ସ୍ୱୀକାର କରିବା ପୂର୍ବ ପର୍ଯ୍ୟନ୍ତ ତିବ୍ଦତ, ଚୀନ ଓ ଭାରତ ମଧ୍ୟରେ 'ସୀମାନ୍ତ ଉତ୍ତେଜନା' ନଥିଲା । ତିବ୍ଦତ ଚୀନ୍‌ର ଏକ ଆଭ୍ୟନ୍ତରୀଣ ପ୍ରଦେଶ ରୂପେ ବିବେଚିତ ହେବା ପରେ ଭାରତ ଓ ଚୀନ୍ ମଧ୍ୟରେ ସୀମା ବିବାଦ ସୃଷ୍ଟି ହେଲା । ଫଳରେ ୧୯୬୨ରେ ଚୀନ୍ ଭାରତର ଉତ୍ତର ସୀମା ଆକ୍ରମଣ କରି ଏକ ବିଶାଳ ଅଞ୍ଚଳ ନିଜ ଅକ୍ତିଆର୍‌ରେ ରଖିଛି । ଏହି ଅଞ୍ଚଳର ପୁର୍ନପ୍ରାପ୍ତି ନିମନ୍ତେ ଚୀନ୍ ଓ ଭାରତ ମଧ୍ୟରେ ଶାନ୍ତିପୂର୍ଣ୍ଣ କଥାବାର୍ତ୍ତା ମଧ୍ୟେ ମଧ୍ୟେ ଚାଲିଛି । ଅଧିକନ୍ତୁ, ଚୀନ୍ ତିବ୍ଦତ ଅଧିକାର କରି ନେବା ପରେ ଲକ୍ଷ ଲକ୍ଷ ତିବ୍ଦତୀୟ ଭାରତକୁ ପଳାଇ ଆସି ଅବସ୍ଥାନ କରୁଛନ୍ତି । (ଆମ ରାଜ୍ୟ ଓଡ଼ିଶାରେ ଚନ୍ଦ୍ରଗିରିଠାରେ ମଧ୍ୟ ତିବ୍ଦତୀୟ ଶରଣାର୍ଥୀମାନେ ଗତ କେତେ ଦଶନ୍ଧି ଧରି ଅବସ୍ଥାନ କରି ଆସୁଛନ୍ତି) । ଏମାନଙ୍କୁ ବିଧିବଦ୍ଧ ଭାବେ ଶରଣାର୍ଥୀ ବୋଲି ସ୍ୱୀକୃତି ଦେବାରେ ଚୀନ-ଭାରତ କୂଟନୈତିକ ସଂପର୍କ ଦୃଷ୍ଟିରୁ ଭାରତ ସରକାର ଅସୁବିଧାର ସମ୍ମୁଖୀନ ହେଉଛନ୍ତି ।

ଖ୍ରୀ ୧୯୫୭ରେ ପୂର୍ବ ତିବ୍ଦତରେ ଚୀନ ଶାସନ ବିରୁଦ୍ଧରେ ବିଦ୍ରୋହ ସୃଷ୍ଟି ହୋଇଥିଲା । ଖ୍ରୀ ୧୯୫୯ରେ ଏକ ଲକ୍ଷ ତିବ୍ଦତୀୟଙ୍କ ସହ ମହାମାନ୍ୟ ଦଲାଇଲାମା ତିବ୍ଦତ ଛାଡ଼ି ପଳାୟନ କରିବା ପରେ ଚୀନ କର୍ତ୍ତୃପକ୍ଷ ପାଞ୍ଚେନ ଲାମାଙ୍କ ନେତୃତ୍ୱରେ ତିବ୍ଦତ ଉପରେ ଏକ ମିଲିଟାରୀ ସରକାର ଲଦି ଦେଇଥିଲେ ଏବଂ 'ଗଣତାନ୍ତ୍ରିକ ସଂସ୍କାର' ପ୍ରକ୍ରିୟା ଆରମ୍ଭ କରିଥିଲେ । ଏହାଦ୍ୱାରା ବହୁ ତିବ୍ଦତୀୟ ମଠକୁ ଧ୍ୱଂସ କରି ଦିଆଗଲା ଏବଂ ବିଧିବଦ୍ଧ ଭାବେ ତିବ୍ଦତୀୟ ସଂସ୍କୃତିକୁ

ମୂଳପୋଛ କରି ଦେବା ନିମନ୍ତେ ଉଦ୍ୟମ ହେଲା । ୧୯୬୫ ପର୍ଯ୍ୟନ୍ତ ତିବ୍ବତରେ ବହୁସଂଖ୍ୟକ ବୌଦ୍ଧ ମଠ ଥିଲା ଏବଂ ତିବ୍ବତୀୟ, ପୁରୁଷ ଜନସଂଖ୍ୟାର କୋଡ଼ିଏ ପ୍ରତିଶତ ଗୃହତ୍ୟାଗୀ ଭିକ୍ଷୁ (ସନ୍ନ୍ୟାସୀ) ଥିଲେ । ତିବ୍ବତର ଏହି ସ୍ୱତନ୍ତ୍ର ପରିଚିତିକୁ ନଷ୍ଟ କରି ଦେବା ପାଇଁ ଚୀନ ସରକାର ମୂଳଭୂଖଣ୍ଡର ହଜାର ହଜାର ଚୀନ୍‌ବାସୀଙ୍କୁ ତିବ୍ବତରେ ବସବାସ କରିବାକୁ ପଠାଇଲେ । ତିବ୍ବତୀୟ ରମଣୀମାନଙ୍କୁ ଚୀନ ମୂଳଭୂଖଣ୍ଡର ଏହି ଅନୁପ୍ରବେଶକାରୀ ପୁରୁଷମାନଙ୍କ ସହ ବିବାହ କରିବାକୁ ବାଧ୍ୟ କଲେ । ଚୀନ୍ ସଂସ୍କୃତିକୁ ତିବ୍ବତୀୟମାନଙ୍କ ଉପରେ ଜୋର୍ ଜବରଦସ୍ତ ଆରୋପ କରାଗଲା । ତିବ୍ବତୀୟମାନଙ୍କୁ ବିଭିନ୍ନ ଲାଭକାରୀ ବୃତ୍ତି ଅବଲମ୍ବନରୁ ଦୂରେଇ ରଖାଗଲା ଏବଂ ଦେଶ ଛାଡ଼ି ଅନ୍ୟତ୍ର ଯିବା ପାଇଁ ଅନୁମତି ଦିଆଗଲା ନାହିଁ । ଚୀନ୍ ମୂଳ ଭୂଖଣ୍ଡର ଅର୍ଥନୈତିକ ପ୍ରଗତି ତିବ୍ବତକୁ ସ୍ପର୍ଶ କଲା ନାହିଁ । ତିବ୍ବତୀୟମାନେ ଅର୍ଥନୈତିକ ଅନଗ୍ରସରତା ମଧ୍ୟ ଦେଇ ଗତି କଲେ । ଦଲାଇଲାମା ଏହାକୁ ଚୀନ୍ କର୍ତ୍ତୃପକ୍ଷଙ୍କ ତିବ୍ବତୀୟମାନଙ୍କର 'ସାଂସ୍କୃତିକ ଗଣହତ୍ୟା' ବୋଲି ଅଭିହିତ କଲେ । ତିବ୍ବତରେ ଲାମାମାନଙ୍କ ଉପଦେଶକୁ ସ୍ଥାନୀୟ ବାସିନ୍ଦାମାନେ ଗ୍ରହଣ କରନ୍ତି । ତେଣୁ ଲାମାମାନଙ୍କୁ ନିଜ ଆୟତ୍ତରେ ରଖି ପାରିଲେ, ସେମାନଙ୍କ ମାଧ୍ୟମରେ ତିବ୍ବତୀୟମାନେ ସେମାନଙ୍କର ମୂଳ ଧର୍ମ ଓ ସଂସ୍କୃତିକୁ କ୍ରମେ କ୍ରମେ ପାଶୋରିଯିବେ ବୋଲି ଚୀନ୍ ଶାସକମାନେ ବିଚାର କଲେ ଏବଂ ତଦନୁଯାୟୀ ତିବ୍ବତୀୟ ଲାମା ଏବଂ ଜନସାଧାରଣଙ୍କ ଉପରେ ନିର୍ମମ ଅତ୍ୟାଚାର ଜାରି ରଖିଲେ । ତିବ୍ବତକୁ ତାର ପାରଂପରିକ ସ୍ୱାତନ୍ତ୍ର୍ୟ (ଅଟୋନମି) ଦେବାକୁ ମନା କରିଦେଲେ । ଏ ଦୃଷ୍ଟିରୁ ଚୀନ୍‌ରେ ତିବ୍ବତର ସାଂପ୍ରତିକ ସ୍ଥିତିକୁ ଦକ୍ଷିଣ ସର୍ବିୟାର ସଂଖ୍ୟା ଗରିଷ୍ଠ ଆଲ୍‌ବାନୀୟ ଅଧ୍ୟୁଷିତ କୋସେଭୋ (ପ୍ରଦେଶ)ର ଅବସ୍ଥା ସହ ତୁଳନା କରାଯାଏ ।

ଏ ସମସ୍ତ ଅତ୍ୟାଚାର ଏବଂ ଅବିଚାର ସତ୍ତ୍ୱେ ନିଜ ମାତୃଭୂମିର ସ୍ୱୟଂଶାସନ ଏବଂ ସ୍ୱାଧିକାର ପ୍ରାପ୍ତି ନିମନ୍ତେ ଗତ ୪୪ ବର୍ଷ ଧରି ନିର୍ବାସନରେ ଥିବା ଦଲାଇଲାମାଙ୍କ ନେତୃତ୍ୱରେ ତିବ୍ବତୀୟମାନଙ୍କର ଅହିଂସ ସଂଗ୍ରାମ ବିଶ୍ୱ ଇତିହାସରେ ଅତୁଳନୀୟ । ଖ୍ରୀ ୧୯୮୭ରେ ତିବ୍ବତରେ ଶାନ୍ତି ଓ ମାନବିକ ଅଧିକାର ପ୍ରତିଷ୍ଠା ନିମନ୍ତେ ମହାମାନ୍ୟ ଦଲାଇଲାମା ଏକ ପଞ୍ଚସୂତ୍ରୀ ଯୋଜନାର ପ୍ରସ୍ତାବ ଦେଇଥିଲେ : (କ) ତିବ୍ବତକୁ ଏକ 'ଅହିଂସା ଅଞ୍ଚଳ'ରେ ରୂପାନ୍ତରିତ କରାଯାଉ ଏବଂ ଶାନ୍ତି ଓ ଅହିଂସାର ପ୍ରତୀକ ସ୍ୱରୂପ ଏହାକୁ ଅଣସାମରିକ ଅଞ୍ଚଳ (demilitarised zone)ରେ ପରିଣତ କରାଯାଉ; (ଖ) ଚୀନ୍‌ର ସ୍ଥାନାନ୍ତରୀକରଣ ନୀତି (Transfer Policy)କୁ ଉଚ୍ଛେଦ କରାଯାଉ । ଏହା 'ତିବ୍ବତର ଅସ୍ମିତା'କୁ ନଷ୍ଟ କରି ଦେଉଛି; (ଗ) ତିବ୍ବତରେ ମୌଳିକ ମାନବିକ ଅଧିକାର ଏବଂ ଗଣତାନ୍ତ୍ରିକ ସ୍ୱାଧୀନତା ପ୍ରତି ସମ୍ମାନ ପ୍ରଦର୍ଶନ; (ଘ) ତିବ୍ବତର ନୈସର୍ଗିକ ପର୍ଯ୍ୟାବରଣର ପୁନର୍ସ୍ଥାପନ ଏବଂ ତିବ୍ବତକୁ ଚୀନ ଦ୍ୱାରା ଆଣବିକ ଅସ୍ତ୍ର ଉତ୍ପାଦନ ତଥା ଆଣବିକ ବର୍ଜ୍ୟବସ୍ତୁର ପୀଠସ୍ଥଳୀ ରୂପେ ବ୍ୟବହାର ଉଚ୍ଛେଦ;

(ଡ) ତିବ୍ବତର ଭବିଷ୍ୟତସ୍ଥିତି ସମ୍ପର୍କରେ କଥାବାର୍ତ୍ତାର ଆରମ୍ଭ ।

ଚୀନ କର୍ତ୍ତୃପକ୍ଷ ଏହି ପ୍ରସ୍ତାବ ଗୁଡ଼ିକୁ ଅଗ୍ରାହ୍ୟ କରିଦେଲେ । ୧୯୮୮ରେ ମହାମାନ୍ୟ ଦଲାଇ ଲାମା 'ଷ୍ଟାସ୍‌ବର୍ଗ ପ୍ରସ୍ତାବ' ଦେଲେ । ଏହି ପ୍ରସ୍ତାବରେ ଚୀନ୍ ତିବ୍ବତର ବୈଦେଶିକ ନୀତି ଓ ପ୍ରତିରକ୍ଷା ବ୍ୟବସ୍ଥା ନିଜ ହାତରେ ରଖି ଆଉ ସମ୍ପୂର୍ଣ୍ଣ ଆଭ୍ୟନ୍ତରୀଣ ସ୍ୱୟଂଶାସନ କ୍ଷମତା ତିବ୍ବତକୁ ଫେରାଇ ଦେବା ପାଇଁ ଦାବୀ କରାଯାଇଥିଲା । ସେତେବେଳେ ସ୍ପଷ୍ଟ ଜଣାଗଲା, ଚୀନ୍ ତିବ୍ବତୀୟମାନଙ୍କୁ କୌଣସି ପ୍ରକାର 'ରିଲିଫ୍' ଦେବାକୁ ଇଚ୍ଛୁକ ନୁହେଁ, ସେତେବେଳେ ଖ୍ରୀ ୧୯୯୧ରେ ଏହି ପ୍ରସ୍ତାବକୁ ଦଲାଇ ଲାମା ପ୍ରତ୍ୟାହାର କରି ନେଇଥିଲେ । ବର୍ତ୍ତମାନ ଚୀନ୍ ଉପରେ ବିଶ୍ୱଜନମତର ଚାପ ପକାଇବା ନିମନ୍ତେ ଦଲାଇ ଲାମା ଉଦ୍ୟମ ଜାରୀ ରଖିଛନ୍ତି । ତାଙ୍କର ଏହି ଅସାମାନ୍ୟ ଧୈର୍ଯ୍ୟ ଓ ସହନଶୀଳତା ସମ୍ବଳିତ ଅହିଂସ ପ୍ରଚେଷ୍ଟା (ସଂଗ୍ରାମ ?) ପାଇଁ ବିଶ୍ୱର ସର୍ବୋଚ୍ଚ ପୁରସ୍କାର ନୋବେଲ୍ ପୁରସ୍କାର ପ୍ରଦାନ କରାଯାଇଛି । ମହାମାନ୍ୟ ଦଲାଇଲାମାଙ୍କ ଏବଂବିଧ କାର୍ଯ୍ୟକ୍ରମରେ ସହଯୋଗ ଏବଂ ସମର୍ଥନ ପ୍ରଦାନ କରିବା ପାଇଁ ଭାରତ ଏବଂ ଓଡ଼ିଶାବାସୀଙ୍କର ନୈତିକ ଦାୟିତ୍ୱ ଓ ଅଧିକାର ଅଛି ।

ଅତୀତରେ ତିବ୍ବତ ସହିତ ଆମ ରାଜ୍ୟ ଓଡ଼ିଶା (କଳିଙ୍ଗ / ଉତ୍କଳ)ର ସଂପର୍କ ସୁବିଦିତ । 'ସମଲ'ର ରାଜା ଇନ୍ଦ୍ରଭୂତି, ଯେ କି ବଜ୍ରଯାନ ବୌଦ୍ଧ ଧର୍ମର ଜଣେ ପ୍ରମୁଖ ପ୍ରବର୍ତ୍ତକ ଏବଂ ବଜ୍ରଯାନୀ ଧର୍ମଶାସ୍ତ୍ର 'ଜ୍ଞାନ ସିଦ୍ଧି'ର ପ୍ରଣେତା, ତାଙ୍କର ପୁତ୍ର ପଦ୍ମ ସମ୍ଭବ ବଜ୍ରଯାନ ବୌଦ୍ଧ ଧର୍ମ ପ୍ରଚାର କରିବାକୁ ତିବ୍ବତ ଯାଇଥିଲେ ଏବଂ ସେଠାରେ ଧର୍ମଗୁରୁ ଭାବେ ଖୁବ୍ ଲୋକପ୍ରିୟ ହୋଇଥିଲେ । ସେହିପରି ତିବ୍ବତୀୟ ଐତିହାସିକ ବୌଦ୍ଧଭିକ୍ଷୁ ତାରାନାଥ ଓଡ଼ିଶା ଭ୍ରମଣରେ ଆସି ଝାଡ଼ଖଣ୍ଡ (ଝାରିଖଣ୍ଡ-Jharikhand) ମଧ୍ୟ ଦେଇ ଯାଇଥିବା କଥା ଡ.କ୍ଟର ନବୀନ କୁମାର ସାହୁଙ୍କ ପ୍ରଣୀତ 'ଓଡ଼ିଶାରେ ବୌଦ୍ଧ ଧର୍ମ' (Buddhism in Orissa) ଗ୍ରନ୍ଥରୁ ଜଣାପଡ଼େ । ଏହି ଗ୍ରନ୍ଥରୁ ମଧ୍ୟ ତିବ୍ବତ ଏବଂ ତିବ୍ବତୀୟ ବୌଦ୍ଧ ଧର୍ମ ସହିତ ଓଡ଼ିଶାର ('ଉଡ୍ଡୟନ'/'ସମଲ', ଯାହାକୁ ସମ୍ବଲପୁର ସହିତ ଚିହ୍ନିତ କରାଯାଉଛି ଏବଂ ଯାହାର ରାଜା ଥିଲେ ବଜ୍ରଯାନର ପ୍ରବର୍ତ୍ତକ ଇନ୍ଦ୍ରଭୂତି) ଘନିଷ୍ଠ ସଂପର୍କ ସମ୍ବନ୍ଧରେ ଆମ୍ଭେ ଜାଣିବାକୁ ପାଏଁ ।

ମହାମାନ୍ୟ ଦଲାଇଲାମା ବାରମ୍ବାର କହିଆସିଛନ୍ତି, ଭାରତ ସହିତ ତିବ୍ବତର ସମ୍ପର୍କ ଗୁରୁଶିଷ୍ୟ ସମ୍ପର୍କ ତୁଲ୍ୟ । ଓଡ଼ିଶାର ଚନ୍ଦ୍ରଗିରିରେ ତିବ୍ବତୀୟମାନଙ୍କ ଅବସ୍ଥାନ, ତିବ୍ବତ ପ୍ରସଙ୍ଗ ପ୍ରତି ଅନ୍ୟାନ୍ୟ ଭାରତୀୟଙ୍କ ପରି ଓଡ଼ିଶାବାସୀଙ୍କର ଭାବାତ୍ମକ ଆବେଗ ସୃଷ୍ଟି କରି ଆସିଛି । ଚୀନ୍ ତିବ୍ବତରେ ତିବ୍ବତୀୟ ମାନଙ୍କର ନିଜସ୍ୱ ଧର୍ମ, ସଂସ୍କୃତି ଏବଂ ସର୍ବୋପରି ସେମାନଙ୍କର ମାନବାଧିକାରକୁ ନିର୍ମମଭାବେ ଲଙ୍ଘନ କରିଆସିଛି ।

ଇନ୍ଦ୍ରଭୂତି 'ଜ୍ଞାନସିଦ୍ଧି'ରେ 'ବଜ୍ରଯାନୀ ବୋଧି ସତ୍ତ୍ୱ' (ବୁଦ୍ଧ)କୁ ଆରାଧନା କରି କହିଛନ୍ତି - 'ପ୍ରଣିପତ୍ୟଂ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତମ୍' । ଐତିହାସିକ ପଣ୍ଡିତମାନେ ମତ ଦିଅନ୍ତି :

ପୁରୀ ଶ୍ରୀମନ୍ଦିରରେ ଅବସ୍ଥିତ 'ବୌଦ୍ଧାବତାର' ଜଗନ୍ନାଥଙ୍କୁ ଲକ୍ଷ୍ୟ କରି ଇନ୍ଦ୍ରଭୂତି ଏପରି ପ୍ରାର୍ଥନା କରିଛନ୍ତି । ତିବ୍ବତ ସହିତ ଉଡ୍ଡୀୟନ ବା ଓଡ଼ିଶାର ବଜ୍ରଯାନୀ-ବୌଦ୍ଧ ଧର୍ମୀୟ ସଂପର୍କ ସମ୍ବନ୍ଧ ଉପରେ ସୂଚିତ ହୋଇଛି । ତେଣୁ ମହାମାନ୍ୟ ଦଲାଇ ଲାମାଙ୍କ ନେତୃତ୍ୱରେ ତିବ୍ବତର ସ୍ୱାଧୀନତା ତଥା ସ୍ୱାତନ୍ତ୍ର୍ୟ (Autonomy) ଫେରି ପାଇବା ପାଇଁ ତିବ୍ବତୀୟ ମାନଙ୍କ ଦ୍ୱାରା ଚାଲିଥିବା ସପକ୍ଷରେ ବିଶ୍ୱଜନମତ ଜାଗ୍ରତକାରୀ ସକରାତ୍ମକ ଅହିଂସକ କାର୍ଯ୍ୟକ୍ରମ / ପଦକ୍ଷେପ ପ୍ରତି ଓଡ଼ିଶାବାସୀଙ୍କର ନିଷ୍ଠିତ ସମର୍ଥନ ଓ ସହାନୁଭୂତି ରହିବା ଅତି ସ୍ୱାଭାବିକ ।

ଓଡ଼ିଶାର ଲୋକଧର୍ମ ହେଉଛି 'ମହାଯାନୀ ବୈଷ୍ଣବ ଧର୍ମ' ଜଗନ୍ନାଥଙ୍କୁ କେନ୍ଦ୍ରକରି । ଜଗନ୍ନାଥ ବୌଦ୍ଧାବତାର ବୋଲି ସାରଳା ମହାଭାରତରେ ବର୍ଣ୍ଣିତ । ଏକଥା ଡକ୍ଟର ମାୟାଧର ମାନସିଂହ ତାଙ୍କ ରଚିତ 'ଓଡ଼ିଆ ସାହିତ୍ୟର ଇତିହାସ'ରେ ପ୍ରତିପାଦିତ କରିଛନ୍ତି । ଐତିହାସିକତା ଦୃଷ୍ଟିରୁ ଏହି ମତ ସମର୍ଥନୀୟ; କାରଣ ଅନ୍ତଃସ୍ରୋତା ଫଲ୍‌ଗୁ ପରି ମହାଯାନୀ ବୌଦ୍ଧ ଭାବ ଓ ଚେତନା ଓଡ଼ିଆଙ୍କ ବୈଷ୍ଣବୀୟ ଧର୍ମ ଧାରଣା ମଧ୍ୟରେ ନିଭୃତରେ ପ୍ରବାହିତ । ତିବ୍ବତୀୟ ବୌଦ୍ଧ ଧର୍ମ ବି ମହାଯାନୀ ବୌଦ୍ଧର ମଧ୍ୟ ଏକ ଅଙ୍ଗ ବିଶେଷ ବୋଲି ଏହି ନିବନ୍ଧର ପ୍ରାରମ୍ଭରେ କୁହାଯାଇଛି । ସୁତରାଂ ଯଥାର୍ଥରେ ତିବ୍ବତୀୟମାନେ ଉତ୍କଳୀୟ ମାନଙ୍କର ଧର୍ମୀୟ ଦୃଷ୍ଟିରୁ 'ସମଗୋତ୍ରୀୟ' ତଥା ଭ୍ରାତୃ-ସମ୍ପର୍କୀୟ । ଭାଇର ଦୁଃଖ ଏବଂ ଦୁଃସମୟରେ ତା' ପାଖରେ ଠିଆ ହେବା, ସହାନୁଭୂତି ଓ ସମର୍ଥନ ଜ୍ଞାପନ କରିବା ହେଉଛି ମାନବୀୟ ତଥା ଜୈବିକ ଧର୍ମ । ସେ ଦୃଷ୍ଟିରୁ ଓଡ଼ିଶାବାସୀଙ୍କର ତିବ୍ବତୀୟ ଭାଇମାନଙ୍କ ଦ୍ୱାରା ନିଜର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଚାଲିଥିବା ଅହିଂସ ସଂଗ୍ରାମ ପ୍ରତି ଦୃଢ଼ ସମର୍ଥନ ରହିଛି ଏବଂ ଏହି ଲକ୍ଷ୍ୟ ହାସଲ ହେବା ପର୍ଯ୍ୟନ୍ତ ରହିବ ହିଁ ରହିବ । ମହାମାନ୍ୟ ଦଲାଇଲାମା ତାଙ୍କର ଜୀବଦ୍ଦଶା ମଧ୍ୟରେ ଏହି ଲକ୍ଷ୍ୟ ହାସଲ କରିବା ପାଇଁ ସମର୍ଥ ଓ ସାଫଲ୍ୟ ମଣ୍ଡିତ ହୁଅନ୍ତୁ 'ସର୍ବଜିନବରାର୍ଚ୍ଚିତଂ' ଶ୍ରୀଜଗନ୍ନାଥଙ୍କୁ ଏହି ଅଧମର ଶତକୋଟିବାର ପ୍ରାର୍ଥନା ଓ ବିନମ୍ର ଅଳି ।।

ଏନ୍ ୩/୨୮୭, ଆଇ.ଆର୍.ସି. ଭିଲେଜ,
ନୟାପଲ୍ଲୀ, ଭୁବନେଶ୍ୱର-୭୫୧୦୧୫

(ଲେଖକ ଉତ୍କଳ ସମ୍ମିଳନୀର ଜଣେ କର୍ମକର୍ତ୍ତା ଭାବେ ସୁପରିଚିତ ଏବଂ ସେ ମଧ୍ୟ ବିଭିନ୍ନ ପତ୍ରପତ୍ରିକାର ଜଣେ ପରିଚିତ ସ୍ତମ୍ଭକାର)

# ତିବ୍ଦତ ସମ୍ପର୍କରେ ଯାହା ଜାଣେ

ଶ୍ରୀ ଭୁବନାନନ୍ଦ ତ୍ରିପାଠୀ

ତିବ୍ଦତ-ଭାରତ ମୈତ୍ରୀ ସଂସଦର ଓଡ଼ିଶା ଶଖା ତରଫରୁ ବିମଳେନ୍ଦୁ ବାବୁଙ୍କ ପାଖରୁ ସୂଚନା ପାଇଲି ଯେ ଏକ ସ୍ମରଣିକା ପ୍ରକାଶ ପାଇବ । ଏଥିପାଇଁ ଗୋଟିଏ ପ୍ରବନ୍ଧ ପଠାଇବା ପାଇଁ ସେ ମୋତେ କହିଲେ । ଖୁସି ହେଲି ଦୁଇଟି କାରଣ ପାଇଁ । ପ୍ରଥମରେ ତିବ୍ଦତ ଭଳି ଏକ ବିଶିଷ୍ଟ ରାଜ୍ୟର ଜନଜୀବନ ଧର୍ମଧାରଣା, ସଂଘର୍ଷମୟ ଐତିହ୍ୟ ତଥା ଏକ ଶାନ୍ତିପ୍ରିୟ କଷ୍ଟସହିଷ୍ଣୁ ସଂପ୍ରଦାୟ ବିଷୟରେ ଆମ ଓଡ଼ିଶାବାସୀ ଜାଣିବାକୁ ପାଇବ । ହୁଏତ ଅନୁପ୍ରାଣୀତ ହେବେ । ଦ୍ୱିତୀୟରେ ମୋର ପ୍ରବନ୍ଧଶୈଳୀକୁ ବିମଳେନ୍ଦୁବାବୁ ପସନ୍ଦ କରୁଥିବାର ପରୋକ୍ଷ ସୂଚନା ପାଇଲି । ଏହିପରିସ୍ଥିତିରେ ଯେମିତି କିଛି ନିରୋଳା ସମୟ ମିଳିଛି । ସଙ୍ଗେ ସଙ୍ଗେ କଲମ ଚଳାଇବା ଆରମ୍ଭ କରିଦେଇଛି ।

ମୁଁ ଅନେକ ବର୍ଷ ଯାଏ ତିବ୍ଦତୀୟ ଲୋକମାନଙ୍କୁ ନେପାଳୀ ବୋଲି ଭାବୁଥିଲି । ରାସ୍ତାକଡ଼ରେ ଶୀତବସ୍ତ୍ର ବିକ୍ରି କରିବାପାଇଁ, ସୁସ୍ଥ, ଗୌରବର୍ଣ୍ଣ, ହୃଷ୍ଟପୁଷ୍ଟ ଶରୀରଯୁକ୍ତ ମହିଳାମାନେ ଯେତେବେଳେ ସେମାନଙ୍କର ଲଙ୍ଗସ୍କର୍ଟ ଡିଜାଇନ୍‌ର ପୋଷାକ ପିନ୍ଧି ଆମ ସହରରେ ବସିଯାଆନ୍ତି, ସେମାନଙ୍କୁ ଦେଖି ମୋର କିଶୋର ବୟସର ବୁଦ୍ଧିରେ ଅନୁମାନ କରୁଥିଲି ଯେ ସେମାନେ ନେପାଳୀ ଲୋକ । ପରେ ଜାଣିଲି ଯେ ଆମ ଓଡ଼ିଶା ପ୍ରଦେଶର ଗଞ୍ଜାମ ଜିଲ୍ଲାର (ବର୍ତ୍ତମାନ ଗଜପତି ଜିଲ୍ଲା) ଚନ୍ଦ୍ରଗିରି ନାମକ ସ୍ଥାନରେ ଶହ ଶହ ତିବ୍ଦତୀୟ ଅନେକ ଦିନରୁ ଆସି ବସବାସ କରୁଛନ୍ତି । ସେମାନେ ଶୀତବସ୍ତ୍ର ବୁଣିବା, ନେପାଳୀ କୁକୁରଛୁଆ ବିକ୍ରିକରିବା, ତଥା ଅନ୍ୟାନ୍ୟ ଛୋଟ ଛୋଟ ଧନ୍ଦାକରି ନିଜର ଜୀବିକା ଅର୍ଜନ କରିଥାନ୍ତି ।

ସେତେବେଳେ ମନକୁ ପ୍ରାୟ ଆସିଥିଲା ଯେ କାହିଁ କେତେଦୂର ତିବ୍ଦତରୁ ଆସି ଏତେ ସଂଖ୍ୟାରେ ଏମାନେ ଓଡ଼ିଶାରେ ପାହାଡ଼ ଜଙ୍ଗଲ ଭିତରେ କାହିଁକି ବାସ କରୁଛନ୍ତି । କ୍ରମେ ମୋ ପ୍ରଶ୍ନର ଉତ୍ତର ପାଇଗଲି । ଏହାପଛରେ ଥିବା ଐତିହାସିକ କାରଣକୁ ଅଳ୍ପେ ବହୁତେ ବୁଝିଗଲି ।

ତିବ୍ଦତ ଏକ ସ୍ୱାଧୀନରାଷ୍ଟ୍ର ଥିଲା । ଏହାର ଭୌଗୋଳିକ ସ୍ଥିତି ଅନୁସାରେ ଦୁଇଟି ବଡ଼ଦେଶ ଯଥା ଭାରତ ଏବଂ ଚୀନର ମଧ୍ୟଭାଗରେ ଏହାର ଅବସ୍ଥିତି । ପୃଥିବୀ ଇତିହାସରେ ଏହିପରି ଗୋଟିଏ ଛୋଟ ରାଜ୍ୟ ଦୁଇଟି ବଡ଼ରାଜ୍ୟ ମଧ୍ୟରେ ରହିବା ଏକ ରାଜନୈତିକ

ଆବଶ୍ୟକତା ବୋଲି କୁହାଯାଏ । ଏହି ମଧ୍ୟବର୍ତ୍ତୀ ଚୋଟ ରାଜ୍ୟକୁ କୁହାଯାଏ ବଫର ଷ୍ଟେଟ୍ । ଇଉରୋପ ମହାଦେଶରେ ଫ୍ରାନସ୍ ଓ ଜର୍ମାନୀର ମଧ୍ୟଭାଗରେ ରହିଛି ଗୋଟିଏ ଛୋଟ ରାଜ୍ୟ ବା ବଫର ଷ୍ଟେଟ । ରାଜ୍ୟଟି ହେଲା ସ୍ୱିଜରଲାଣ୍ଡ । ଦୁଇ ରାଷ୍ଟ୍ର ଭିତରେ କୌଣସି କାରଣରୁ ତିକ୍ତତା ଦେଖାଦେଲେ ସୀମାବର୍ତ୍ତୀ ଅଞ୍ଚଳସବୁ ତତ୍‌କ୍ଷଣାତ୍ ପ୍ରଭାବିତ ହୋଇନଥାଏ । ସୀମାପାରକରି ଜଣେ ଅନ୍ୟଜଣକୁ ଆକ୍ରମଣ କରିବା ବେଳେ ଏକ ବାଧାସ୍ୱରୂପ ଏହି ବଫର ଷ୍ଟେଟ୍ ରହିଥାଏ । ଯଦି ବଫର ଷ୍ଟେଟର ସୀମା କାହାଦ୍ୱାରା ଉଲଙ୍ଘନ ହେଲା, ତେବେ ଅନ୍ୟରାଜ୍ୟ ସତର୍କ ହୋଇଯାଇଥାଏ ଏବଂ ବଫର ଷ୍ଟେଟର ସୁରକ୍ଷା ସହିତ ନିଜର ସୁରକ୍ଷା ପାଇଁ ଆଗଭର ହୋଇଥାଏ ।

୧୯୬୨ ମସିହାରେ ଭାରତ-ପାକିସ୍ଥାନ ଯୁଦ୍ଧ ହେବା ସମୟରେ ସେହିପରି ଏକ ପରିସ୍ଥିତି ସୃଷ୍ଟି ହୋଇଥିଲା । ଚୀନ ତିବ୍ବତ ଉପରେ ଆକ୍ରମଣ କରି ଏହାକୁ ନିଜ ଦେଶର ଅଧୀନସ୍ଥ କରିଦେଲା । ବାଧ୍ୟହୋଇ ତିବ୍ବତର ଶାସନକର୍ତ୍ତା ଏବଂ ତାଙ୍କର ଘନିଷ୍ଠ ସହଯୋଗୀଗଣ ତିବ୍ବତ ଛାଡ଼ି ଭାରତ ଚାଲି ଆସିଲେ । ଭାରତ ସରକାରଙ୍କ ଶରଣାପନ୍ନ ହେଲେ । ହିମାଚଳ ପ୍ରଦେଶର ଧର୍ମଶାଳା ନାମକ ସ୍ଥାନରେ ତିବ୍ବତର ଶାସନକର୍ତ୍ତା ନିଜର ଅସ୍ଥାୟୀ ରାଜଧାନୀ ପ୍ରତିଷ୍ଠାକଲେ ଏବଂ ତିବ୍ବତବାସୀଙ୍କୁ ଏହିସ୍ଥାନରୁ ଧାର୍ମିକ ତଥା ପ୍ରଶାସନିକ ନିର୍ଦ୍ଦେଶ ଦେଲେ । ତିବ୍ବତର ଶାସନକର୍ତ୍ତାଙ୍କୁ ଦଲାଇଲାମା କୁହାଯାଏ । ଦଲାଇଲାମାଙ୍କ ସହିତ ଅନେକ ତିବ୍ବତବାସୀ ଭାରତକୁ ଚାଲିଆସିଲେ । ସେଥିମଧ୍ୟରୁ କେତେକ ଆସି ଗଜପତି ଜିଲ୍ଲାର ରାମଗିରି ବ୍ଲକର ଚନ୍ଦ୍ରଗିରିଠାରେ ବସବାସ ଆରମ୍ଭ କଲେ । ପ୍ରାଥମିକ ସ୍ତରରେ ଏହା ଥିଲା ତିବ୍ବତୀୟ ଶରଣାର୍ଥୀ ଶିବିର ।

ତିବ୍ବତ ଏକ ଧର୍ମପ୍ରଧାନ ଦେଶ । ଏହାର ସମସ୍ତ ଲୋକ ବୌଦ୍ଧ ଧର୍ମାବଲମ୍ବୀ । ଦେଶସାରା ବୌଦ୍ଧମନ୍ଦିର ଶଶଣୋତା ଓ ପ୍ରାର୍ଥନାଘର । ଏସବୁର ପରିଚାଳନା ପାଇଁ ଲାମା ଅର୍ଥାତ ପୂଜାରୀମାନେ ନିଯୁକ୍ତ ଅଛନ୍ତି । ଦେଶର ସର୍ବୋଚ୍ଚ ଲାମାଙ୍କୁ ଦଲାଇଲାମା କୁହାଯାଏ । ଦଲାଇଲାମା ଧାର୍ମିକ ମୁଖ୍ୟ ହେବା ସଙ୍ଗେ ସଙ୍ଗେ ଦେଶର ଶାସନମୁଖ୍ୟଭାବେ କାର୍ଯ୍ୟ କରନ୍ତି । ଦଲାଇ ଲାମାଙ୍କ ବେଶପୋଷାକ ମଧ୍ୟ ଜଣେ ଖାଣ୍ଟି ଧାର୍ମିକ ବ୍ୟକ୍ତିଙ୍କ ଭଳି । ଲଣ୍ଡିତ ମୁଣ୍ଡ, ଗେରୁଆ ପୋଷାକ, ପାଦରେ କଠଉ ଇତ୍ୟାଦି । ବର୍ତ୍ତମାନ ଥିବା ଦଲାଇଲାମା ତାଙ୍କ ଶାନ୍ତିପ୍ରିୟ ବିଚାର ପାଇଁ ସାରା ବିଶ୍ୱରେ ସୁପରିଚିତ । ଶାନ୍ତିର ପ୍ରତିଷ୍ଠା ପାଇଁ ତାଙ୍କୁ ନୋବେଲ ଶାନ୍ତି ପୁରସ୍କାର ମଧ୍ୟ ମିଳିଛି ।

ତିବ୍ବତର ସମସ୍ୟା ପ୍ରତି ବିଶ୍ୱବାସୀ ଧୀରେ ଧୀରେ ସଚେତନ ହେଲେଣି । ମାତ୍ର ଚୀନ ତରଫରୁ ଆଜିପର୍ଯ୍ୟନ୍ତ ଶାନ୍ତିର ବାର୍ତ୍ତା ଆସିନାହିଁ । ତିବ୍ବତ ଭୂଖଣ୍ଡ ଏବେ ମଧ୍ୟ ଚୀନର ଅଧୀନ ହୋଇ ରହିଛି । ସେଥିପାଇଁ ଚୀନର କୌଣସି ବିଶିଷ୍ଟ ବ୍ୟକ୍ତି ଭାରତ ଗସ୍ତରେ

ଆସିଲେ ତିବ୍ଦତବାସୀଙ୍କ ତରଫରୁ ପ୍ରତିବାଦ, ଶୋଭାଯାତ୍ରା, ଧାରଣା ଆଦି କରାଯାଇଥାଏ । ଗତବର୍ଷ ଜଣେ ତିବ୍ଦତବାସୀ ଯୁବକ ଦିଲ୍ଲୀ ରାଜପଥରେ ଚୀନଶାସନର ପ୍ରତିବାଦ ସ୍ୱରୂପ ଆତ୍ମଦାହ କରିଥିବା ଜଣାଯାଏ ।

ତିବ୍ଦତ ଏକ ସ୍ୱତନ୍ତ୍ର ଦେଶ । ଏହାର ଦେଶବାସୀ, ଧର୍ମଧାରଣା, ପୋଷାକପତ୍ର ସବୁ ସ୍ୱତନ୍ତ୍ର । ବିଶେଷ କରି ଆମ ଓଡ଼ିଶାର ଚାଲିଚଳଣିଠାରୁ ପୁରାପୁରି ଭିନ୍ନ । ତଥାପି ଗତ ୩୦ ବର୍ଷ ଧରି ତିବ୍ଦତବାସୀ ଓଡ଼ିଶାରେ ଶାନ୍ତିପୂର୍ଣ୍ଣଭାବେ ବସବାସ କରୁଛନ୍ତି । ସେମାନଙ୍କର କର୍ମଠ ସ୍ୱଭାବ, ସ୍ତ୍ରୀପୁରୁଷ ଭିତରେ ବିଭେଦ ଶୂନ୍ୟତା ଏବଂ ଦୃଢ଼ ମନୋବଳ ତଥା ଗଭୀର ଧର୍ମବିଶ୍ୱାସ ଓଡ଼ିଶାବାସୀଙ୍କ ପାଇଁ ଧ୍ୟେୟ ହେଉ ଏହା ହିଁ କାମନା ।

ଜିରିବୁରୁ, କେନ୍ଦୁଝର

(ଲେଖକ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶାର ପୂର୍ବତନ ନିର୍ଦ୍ଦେଶକ ତଥା ଜଣେ ପରିଚିତ ସ୍ତମ୍ଭକାର)

# ସାମ୍ୟବାଦ, ତିବ୍ବତ ଓ ଆମେ

ଭାଗୀରଥି ମହାସୁଆର

ଦିଲ୍ଲୀର ରାସ୍ତାକଡ଼ରେ ବସ୍‌ମାନଙ୍କର ଡିଜେଲ ଧୂଆଁ ଖାଇ ଖାଇ ଖଣ୍ଡେ ଛିଣ୍ଡା କନା ଉପରେ ଚକାମାଡ଼ି ବସିଥିବା ସେହି ମହିଳା କଥା କେହି ଭାବନ୍ତି ନାହିଁ । ସେ କହୁଥାଏ, ''ମୁଁ ବୁଢ଼ୀ ହୋଇଗଲିଣି, ସମୟ ସରି ଆସିଲାଣି । ମୋର ଇଚ୍ଛା ଯେ ମୁଁ ମଲା ପୂର୍ବରୁ ମୋପୁଅକୁ ଟିକେ ଦେଖନ୍ତି ।''

ଡେକି ନାମ୍ନୀ ଏହି ମହିଳା ଜଣେ ତିବ୍ବତୀୟ ଶରଣାର୍ଥୀ ଭାରତରେ । ତାଙ୍କ ପୁଅ ନାଗ୍ୱାଙ୍ଗ ଚୋଫେଲ୍ । ଚୀନୀୟ ଅତ୍ୟାଚାରରେ ଡେକି ଭାରତକୁ ଶରଣାର୍ଥୀ ହୋଇ ଆସିଥିବା ବେଳେ ଚୋଫେଲ୍ ଥିଲା ଦୁଇ ବର୍ଷର । ମା'ଠାରୁ ତିବ୍ବତୀୟ ଲୋକଗୀତ ଶୁଣି ଶୁଣି ଆକୃଷ୍ଟ ହୋଇଥିଲା ସଙ୍ଗୀତ ଆଡ଼କୁ । ତିବ୍ବତୀୟ ବୀଣା ବଜାଇ ଶିଖିଲା । ଭାରତର ଧର୍ମଶାଳାସ୍ଥ ତିବ୍ବତୀୟ ସଂଗୀତ ନୃତ୍ୟ କଳା ପ୍ରତିଷ୍ଠାନରୁ ସ୍ନାତକ ହୋଇ ଆମେରିକା ଯାଇଥିଲା ଫୁଲ୍‌ବ୍ରାଇଟ୍ ବୃତ୍ତି ପାଇଁ । ଏକ ଆମେରିକୀୟ ମହାବିଦ୍ୟାଳୟରେ ସେ ଶିକ୍ଷା ପାଇଁ ଅଧ୍ୟାପନା କରିଥିଲା ମଧ୍ୟ ।

ବିଚରା ଚୋଫେଲ୍ ଆମେରିକୀୟ ଫଟୋଗ୍ରାଫର୍ ସାଥୀ କାଥେରିନ୍ କୁଲି ସହ ତିବ୍ବତ ଯାଇଥିଲା ନିଜ ମାତୃଭୂମିର ଲୋକକଳାକୁ ଭିଡ଼ିଓ କ୍ୟାମେରାରେ ବନ୍ଦୀ କରି ଆଣିବାକୁ । ଏହାକୁ ଲୋପ କରାଯାଉଥିବାର ସମ୍ବାଦ ତାକୁ ଜଣାଥିଲା ଏବଂ ଯତ୍‌କିଞ୍ଚିତ୍ ସୁରକ୍ଷିତ କରିନେବାକୁ ସେ ଲକ୍ଷ୍ୟ ରଖିଥିଲା । କୁଲି ଫେରି ଆସିବା ପରେ ସେ ଗାଁକୁ ଗାଁ ବୁଲିଲା ଏକା ଏକା ।

ବଜାରରେ ବୁଲୁଥିବା ବେଳେ ତାକୁ ଧରିନେଲେ ଚାଇନା ପୋଲିସ୍ । ବର୍ଷେ କାଳ ସେ ନିଖୋଜ ବୋଲି ଜଣାପଡ଼ିଲା । ତେବେ ଆମେରିକୀୟ ସିନେଟରଙ୍କ ଚାପରେ ୱାଶିଂଟନ୍‌ସ୍ଥିତ ଚାଇନା ଦୂତବାସ ସ୍ୱୀକାର କଲେ ଚୋଫେଲ୍ ଜେଲ୍‌ରେ ଥିବାର । ତା ବିରୁଦ୍ଧରେ ଅଭିଯୋଗ ଥିଲା ଗୁଇନ୍ଦାଗିରି ଓ ବିଚ୍ଛିନ୍ନତାବାଦ । ଶେଷକୁ ଚୀନା ରେଡିଓ ସୂତ୍ରରୁ ଜଣାଗଲା ଯେ ସେ ୧୮ ବର୍ଷ ଜେଲ୍ ଦଣ୍ଡ ଭୋଗୁଛି । ତିବ୍ବତୀୟ ସୂତ୍ର ଅନୁଯାୟୀ ସେ ଏକ ବାଧ୍ୟତାମୂଳକ ଶ୍ରମ ଶିବିରରେ ଅଛି, ଯେଉଁଠି ପରିଦର୍ଶକଙ୍କୁ ଅନୁମତି ମିଳେ ନାହିଁ ।

କେବଳ ସେ ନୁହେଁ, ପ୍ରାୟ ୧୨୦୦ ତିବ୍ବତୀୟ ବନ୍ଦୀ ଅଛନ୍ତି ଚାଇନାର ବିଭିନ୍ନ

ଜେଲ୍‌ରେ । ସେମାନଙ୍କୁ ଆତ୍ମୀୟ ବା ଆଇନ୍‌ଜୀବୀ ଦେଖା କରିବା ମନା । ସମସ୍ତଙ୍କୁ ଉତ୍ପୀଡ଼ନ ଦିଆଯାଉଛି । ୩୩ ବର୍ଷ ଏପରି ଭୋଗ କରି ଜେଲ୍‌ରୁ ଖସି ଆସିଥିବା ପାଲ୍‌ଡେନ୍ ଗ୍ୟାସ୍ତୁ ସାଙ୍ଗରେ ଆଣିଛି ବ୍ୟବହୃତ ଉତ୍ପୀଡକ ସାମଗ୍ରୀ କିଛି । ଏହି ୬୯ ବର୍ଷୀୟ ବୃଦ୍ଧର ସମସ୍ତ ଦାନ୍ତ ନଷ୍ଟ ହେବା ସହ ମାଢ଼ି କ୍ଷତାକ୍ତ ହୋଇଛି ବିଦ୍ୟୁତ୍-ବାଡ଼ି ପ୍ରୟୋଗରେ । ତା' ହିସାବ ଅନୁଯାୟୀ ଅନ୍ୟମାନେ ୪୪ ବର୍ଷ ଜେଲ୍ ଭୋଗି ସାରି ୨୦୧୧ ମସିହାରେ ଖଲାସ ହେବାର ଅଛି ।

ସତରେ କେତେ ଅତ୍ୟାଚାର । ଉଦ୍ଦେଶ୍ୟ ହେଉଛି ତିବ୍ବତର ସତ୍ତାକୁ ଚୀନ୍ ଭିତରେ ମିଳାଇ ଦେବା । ଯେଉଁମାନେ ତିବ୍ବତୀୟ ଜାତୀୟତା ସପକ୍ଷରେ, ସେମାନେ ସମସ୍ତେ ଅତ୍ୟାଚାରିତ । ଏକଦା ସ୍ୱତନ୍ତ୍ର ଦେଶ ଥିବା ତିବ୍ବତ ଖଣିଜ ପଦାର୍ଥ, ବାଉଁଶ ଓ ଜଳ-ବିଦ୍ୟୁତ୍ ଉତ୍ପାଦନ ଯୋଗେ ଧନୀ । ଅଥଚ ଏ ଧନ ଚୀନ ସରକାରଙ୍କର । ୧୯୪୯ ପରଠାରୁ ଚାଇନାର ସାମ୍ୟବାଦୀ ସରକାରଙ୍କର ଏ କୀର୍ତ୍ତି । ତିବ୍ବତ ପ୍ରକୃତରେ ଏକବିଂଶ ଶତାବ୍ଦୀକୁ ଦେଖି ପାରିନି ଏ ଯାବତ୍ । ଖ୍ରୀଷ୍ଟପୂର୍ବ ଅମଳର କାହାଣୀରେ ଥିବା ଅତ୍ୟାଚାରୀ ସମ୍ରାଟ ମାନଙ୍କ ଶାସନ ଚାଲିଛି ସେଠାରେ ।

ଚାଳିଶ ବର୍ଷରେ ୬୦୦୦ ବୌଦ୍ଧ ମନ୍ଦିର ଭଙ୍ଗାଯାଇଛି ଏବଂ ମିଛରେ ଦାବି କରାଯାଏ ଯେ, ଚୀନ ସେଠାରେ ମନ୍ଦିର ଗୁଡ଼ିକର ଜୀର୍ଣ୍ଣୋଦ୍ଧାର କରୁଛି । ତିବ୍ବତୀୟମାନଙ୍କୁ ବଳପୂର୍ବକ ଚାନୀୟ ଦେଶପ୍ରେମ ଶିକ୍ଷା ଦିଆଯିବା ଆଳରେ ବସ୍ତୁତଃ ସେମାନଙ୍କୁ ମୂଳ ସଂସ୍କୃତି ପରିବର୍ତ୍ତନ କରିବାକୁ ବାଧ୍ୟ କରାଯାଉଛି । ଏଥିପାଇଁ ନେପାଳ ଓ ଭାରତ ସୀମାନ୍ତର ମରଣାନ୍ତକ ପାର୍ବତ୍ୟରାସ୍ତା ପାର୍‌କରି ୪୦୦୦ ତିବ୍ବତୀୟ ଶରଣାର୍ଥୀ ପଳାଇ ଆସିଛନ୍ତି ଭାରତକୁ । ଏହା ଏକ ମାନବିକ ଅଧିକାର ପ୍ରତିଷ୍ଠାନର ପରିସଂଖ୍ୟାନ ।

ଅନ୍ୟ ଏକ କାହାଣୀ ହେଲା ଜେରିଂ ଚୋକିଙ୍କର, ଯେ ଥିଲେ ଜଣେ ତିବ୍ବତୀୟ ସ୍ୱାଧୀନତା ସଂଗ୍ରାମୀ । ତିବ୍ବତୀୟ ଜାତୀୟ ପତାକା ଉଡ଼ାଇବା ଅପରାଧରେ ଏହି ସନ୍ନ୍ୟାସିନୀଙ୍କୁ ୧୪ ବର୍ଷ ବୟସରେ ଗିରଫ କରାଯାଇଥିଲା । ମାସେ କାଳ ଅକଥନୀୟ ନିର୍ଯ୍ୟାତନା ଦିଆଗଲା ତାଙ୍କୁ । ଚିକିତ୍ସାରେ ଅସହଯୋଗ କରି ତାଙ୍କ ଦେହ ସାରା ନିର୍ଯ୍ୟାତନାଜନିତ କ୍ଷତ ପାଚିଗଲା, ଯାହାର ଗଭୀର ଚିହ୍ନ ଏବେ ବି ଅଛି । ବର୍ଷେକାଳ ବିନା ଅଭିଯୋଗ ଓ ବିନା ଆଇନ୍ ସହାୟତାରେ ବନ୍ଦୀ ରହିବା ପରେ ତାଙ୍କୁ ମିଳିଲା ୩ ବର୍ଷ ସଶ୍ରମ କାରାଦଣ୍ଡ । ଦଣ୍ଡଭୁକ୍ତି ପରେ ୮୫ ଜଣ ଅନ୍ୟ ତିବ୍ବତୀୟଙ୍କ ସହ ସେ ଏକ ବିପଜ୍ଜନକ ପ୍ରାସ୍ତ ନଦୀ ସନ୍ତରଣ କରି ଓ ବରଫାବୃତ୍ତ ଶୃଙ୍ଗମାନଙ୍କୁ ଆଶ୍ରୟ କରି କରି ଭାରତ ଚାଲି ଆସିଲେ । ଏବେ ତାଙ୍କରି ଭଳି ୪୨ ଜଣ ନିର୍ଯ୍ୟାତିତଙ୍କ ସହ ସେ ଏକ ଶରଣାର୍ଥୀ ଶିବିରରେ ଆଶ୍ରିତ । ଯାହାହେଉ, ସେ ତ' ଜୀବନ ନେଇ ଆସିଛନ୍ତି । ଏହିଭଳି ନିର୍ଯ୍ୟାତନା ଫଳରେ ତାଙ୍କ

ଜାଣିବାରେ ଅନ୍ତତଃ ୩୫ ଜଣ ତିବ୍ବତୀୟ ନିହତ ହୋଇଛନ୍ତି ।

ୱାଶିଂଟନ୍‌ସ୍ଥିତ ହ୍ୟୁମାନ ରାଇଟସ୍ ୱାଚ୍ ସଂସ୍ଥାର ଏସୀୟ ଶାଖା ମତରେ ତିବ୍ବତ ସଂପର୍କରେ ଚୀନ ଉପରୁ ଆନ୍ତର୍ଜାତିକ ଚାପ କୋହଳ ହୋଇ ଯିବାରୁ ତିବ୍ବତରେ ଅତ୍ୟାଚାର କ୍ରମଶଃ ବଢୁଛି । ୧୯୯୮ରେ ତିବ୍ବତୀୟ ବୌଦ୍ଧ ମଠ ମାନଙ୍କରୁ ୪୯୦ ସନ୍ନ୍ୟାସୀ ଓ ସନ୍ନ୍ୟାସିନୀଙ୍କୁ ଗିରଫ କରାଯାଇଛି ଓ ୯୯୦୦ ଜଣଙ୍କୁ ତଡ଼ି ଦିଆଯାଇଛି । ଯେଉଁମାନେ ଦଲାଇଲାମାଙ୍କୁ ସ୍ୱୀକାର କରନ୍ତି ଓ ସ୍ୱାଧୀନ ତିବ୍ବତ କଥା କହନ୍ତି, ସେମାନଙ୍କୁ ରାଜନୈତିକ ବନ୍ଦୀ ହିସାବରେ ଗିରଫ କରାଯାଉଛି । ଏ ସବୁ କଥା ଚୀନ୍ ଭାଷାରେ ‘‘ଜାତୀୟ ନିରାପତ୍ତା ପ୍ରତି ବିପଦ’’ ।

ତଥାପି ସେଠାରେ ନିର୍ଭୀକ ଭାବରେ ଓ କିଛି ଲୁଚାଛପାରେ ନିଜ ସଂସ୍କୃତିକୁ ବଞ୍ଚାଇବାରେ ଚେଷ୍ଟିତ ତିବ୍ବତୀୟମାନେ ଓ ସେମାନେ ଦଲାଇ ଲାମାଙ୍କ ପ୍ରତିକୃତିକୁ ପୂଜା ମଧ୍ୟ କରୁଛନ୍ତି । ସେମାନଙ୍କର ବିଶ୍ୱାସ ଯେ, ସେ ଦିନେ ନା ଦିନେ ଦେଶକୁ ଫେରି ତାଙ୍କ କଥା ବୁଝିବେ । ମାତ୍ର ତିବ୍ବତୀୟମାନଙ୍କୁ ଯୋଜନାବଦ୍ଧ ଭାବେ ନିଜ ଦେଶରେ ସଂଖ୍ୟାଲଘୁ କରିବାର ପ୍ରଚେଷ୍ଟା ଚାଲିଛି । ତିବ୍ବତର ପଡ଼ୋଶୀ ଚୀନା ପ୍ରଦେଶମାନେ ନିଜ ନିଜ ମାନଚିତ୍ରରେ ତିବ୍ବତର ଅନେକାଂଶ ମିଶାଇ ସାରିଲେଣି । ବର୍ତ୍ତମାନ ମୂଳ ତିବ୍ବତରେ ୬ ନିୟୁତ ତିବ୍ବତୀୟଙ୍କ ସହ ୭.୫ ନିୟୁତ ଚୀନାଙ୍କୁ ବସବାସ କରାଯାଇଛି । ଏପରିକି ବିଶ୍ୱବ୍ୟାଙ୍କ ସହାୟତାରେ ଚୀନା କୃଷକଙ୍କୁ ତିବ୍ବତରେ ଜମି ଦେଇ ଥଇଥାନ କରାଯାଉଛି ଆମେରିକା ସରକାରଙ୍କ ଆପତ୍ତି ସତ୍ତ୍ୱେ ।

ଏକ ଗୋପନୀୟ ଚୈନିକ ସୂତ୍ରରୁ ଜଣାପଡ଼ିଛି ଯେ, ଚୀନାମାନେ ତିବ୍ବତୀୟମାନଙ୍କ ମନ ଜୟ କରିବାକୁ ବସ୍ତୁତଃ ବିଫଳ ହୋଇଛନ୍ତି । ଏଣୁ ସେମାନେ ଏକ ନେତିବାଚକ ଯୋଜନା ମାଧ୍ୟମରେ ତିବ୍ବତୀୟମାନଙ୍କ ଭାଷା, ସଂସ୍କୃତି ଓ ପରିଚିତି ଧ୍ୱଂସ କରିଦେବାର ଅପଚେଷ୍ଟା ଜାରି ରଖିଛନ୍ତି ।

ଏହି ପରିସ୍ଥିତିରେ ବୃଦ୍ଧା ଡେକିଙ୍କୁ ନିଜ ବନ୍ଦୀ ପୁଅକୁ ଦେଖିବା ପାଇଁ ଚୀନ ସରକାର ଅନୁମତି ଦେଉନାହାନ୍ତି । ଭାରତରେ ଅଶ୍ରୁତ ପ୍ରାର୍ଥନା ଜାରି ରଖିଥିବା ସହ ସେ ଏଥିପାଇଁ ଚାପ ପକାଇବାକୁ ଆମେରିକା ଓ ୟୁରୋପ୍ ବୁଲି ଆସିବା ପରେ ବି ଅସଫଳ ରହିଛନ୍ତି । ତାଙ୍କ ପୁଅ ଜେଲ୍‌ରୁ ମୁକ୍ତ ହେଲେ, ମା’ ଓ ପୁଅ ଉଭୟେ ଆମେରିକା ବୁଲି ଯିବାର ଖର୍ଚ୍ଚ ପାଇଁ ଏକ ବୋଷ୍ଟାନ୍ ସ୍କୁଲ୍‌ର ଛାତ୍ରମାନେ ଚାନ୍ଦା ଆଦାୟ କରି ଦେଇଛନ୍ତି । କିନ୍ତୁ କ’ଣ ହେବ ? ଚୋଫେଲ୍ ମୁକ୍ତ ହେବା ବେଳକୁ ଡେକି ବଞ୍ଚିଥିବେ ତ ?

ଏକ ସାମ୍ୟବାଦୀ ଦେଶରୁ ମାନବିକତା ଧ୍ୱଂସ ପାଇଥିବାର ନମୁନା ଆଉ କ’ଣ ହୋଇପାରେ ? ତିବ୍ବତକୁ ଚୀନ ବଳପୂର୍ବକ ଅଧିକାର କରି ନେବା ପରେ ଭାରତର ପ୍ରଥମ

ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁ ''ହିନ୍ଦୀ-ଚୀନା ଭାଇ ଭାଇ'' ଧ୍ୱନି ଭିତରେ ଏହାକୁ ସ୍ୱୀକୃତି ଦେଇଥିଲେ । ନେହେରୁ ନିଜେ ଜଣେ ଐତିହାସିକ ଓ ବିଶ୍ୱ ଇତିହାସ ଲେଖିଛନ୍ତି । ସେ କେଉଁ ଇତିହାସରୁ ତିବ୍ବତକୁ ଚୀନ୍‌ର ଅଂଶ ବୋଲି ପଢ଼ିଥିଲେ, ତାହା ଆମକୁ ଜଣାନାହିଁ । ଏହାକୁ ଭାଗ୍ୟର ବିଡ଼ମ୍ବନା ହିଁ କୁହାଯିବ ।

ମହାତ୍ମା ବୁଦ୍ଧ ଈଶ୍ୱରବିଶ୍ୱାସୀ ନ ଥିଲେ । ବୌଦ୍ଧମାନେ ଈଶ୍ୱରବିଶ୍ୱାସୀ ବ୍ରାହ୍ମଣ୍ୟ ହିନ୍ଦୁଧର୍ମ ବିରୁଦ୍ଧରେ ବିପ୍ଳବୀ ଥିଲେ । ତିବ୍ବତୀୟମାନେ ବୌଦ୍ଧ । ସେହିପରି ସାମ୍ୟବାଦ ଈଶ୍ୱର ବିଶ୍ୱାସକୁ ବୁର୍ଜୁଆ ତାକତର୍କ ବୋଲି ଭାବେ । ଚୀନାମାନେ ସାମ୍ୟବାଦୀ । କିନ୍ତୁ ଦୁଇଟି ନାସ୍ତିକ ସଂପ୍ରଦାୟ ମଧ୍ୟରେ ବନ୍ଧୁତା ହୋଇ ପାରିଲା ନାହିଁ । ଏକ ଆରେକକୁ ନିଃଶେଷ କରିବାରେ ଅଗ୍ରଗାମୀ । ପୃଥିବୀ ନିରବ ।

ଏବେ ଦଲାଇଲାମା ଓ ତାଙ୍କ ଅନୁଗାମୀମାନେ ଆଶ୍ରିତ ଈଶ୍ୱରବିଶ୍ୱାସୀ ଭାରତୀୟଙ୍କ ନିକଟରେ । ଏହାର ନିଷ୍କର୍ଷ ବୁଦ୍ଧିଜୀବୀମାନେ ସ୍ଥିର କରନ୍ତୁ ।

ଈଶ୍ୱରଧାମ, ଜମ୍ବେଶ୍ୱର ପାଟଣାସାହି
ଭୁବନେଶ୍ୱର-୭୫୧୦୦୨

(ଲେଖକ ବିଭିନ୍ନ ପତ୍ରପତ୍ରିକାରେ ନିୟମିତ ଲେଖୁଥିବା
ଜଣେ ସ୍ତମ୍ଭକାର ଭାବେ ସୁପରିଚିତ)

# ବିଶ୍ୱ ମାନବିକ ଅଧିକାର ଘୋଷଣାନାମା ଏବଂ ଡିଭଡ

ଜଗନ୍ନାଥ ପଣ୍ଡା

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବିଶ୍ୱବାସୀ ଦୁଇ ଦୁଇଟି ମହାସମରର ଭୟାବହତାର ସମ୍ମୁଖୀନ ହୋଇଛନ୍ତି । ଏହି ଦୁଇଟି ମହାସମରରେ ହୋଇଥିବା ପ୍ରଭୂତ କ୍ଷୟକ୍ଷତି ବିଶ୍ୱ ଜନମାନସକୁ ଆନ୍ଦୋଳିତ କରିଛି । ମୁଖ୍ୟତଃ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଆମେରିକା ଦ୍ୱାରା ବ୍ୟବହୃତ ପରମାଣୁ ବୋମାର ଭୟାବହତା ଧରାପୃଷ୍ଠରେ ମାନବଜାତିର ଅବସ୍ଥିତିକୁ ନେଇ ପ୍ରଶ୍ନବାଚୀ ସୃଷ୍ଟି କରିଛି । ଜାପାନର ହିରୋସିମା ଏବଂ ନାଗାସାକିର ଭୟାବହ ଲୋମହର୍ଷଣ କାରୀ ଦୃଶ୍ୟ ଏବେ ମଧ୍ୟ ମନୁଷ୍ୟ ମନରୁ ଦୂରେଇ ନାହିଁ । ଏବେବି ସେଠାରେ ବିକଳାଙ୍ଗ ଶିଶୁ ଜନ୍ମ ନେଇ ପରମାଣୁ ଅସ୍ତ୍ରର ଭୟାବହତାକୁ ମନେ ପକାଇ ଦେଉଛି । ଏହି ବିଶ୍ୱ ଯୁଦ୍ଧରେ ଜନସାଧାରଣ ତାଙ୍କର ଜୀବନ ଏବଂ ସ୍ୱତନ୍ତ୍ରତାର ଅଧିକାର ବହୁଳ ଭାବରେ ଉଲ୍ଲଘଂନ କରାଯାଇଛି । ଏହି ମହାସମରରେ ଶତ୍ରୁ ପକ୍ଷର ସୈନିକଙ୍କ ବ୍ୟତୀତ ଲକ୍ଷଲକ୍ଷ ଶାନ୍ତ ନିରୀହ ଜନସାଧାରଣଙ୍କ ଧନ ଜୀବନ ବିପନ୍ନ ହୋଇଛି । ନିଜ ଦେଶର ସ୍ୱାର୍ଥ ପାଇଁ ଅନ୍ୟ ଦେଶର ସାଧାରଣ ଜନତାର ଧନଜୀବନକୁ ନଷ୍ଟ କରିବା ପାଇଁ ସ୍ୱାର୍ଥାନ୍ୱେଷୀ ରାଷ୍ଟ୍ରମାନେ ପଶ୍ଚାତପଦ ହୋଇ ନାହାଁନ୍ତି । ସେମାନେ ଜନସାଧାରଣଙ୍କର ସାମାଜିକ, ରାଜନୈତିକ, ଧାର୍ମିକ ଏବଂ ଅର୍ଥନୀତିକ ଅଧିକାରକୁ ବହୁଳ ଭାବରେ ଉଲ୍ଲଘଂନ କରିଛନ୍ତି । ଏହିପରି ଏକ ବିଭୀଷିକାମୟ ଅଧ୍ୟାୟର ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷରେ ଅବସାନ ଘଟିଛି ।

ବିଶ୍ୱରେ ଶାନ୍ତିରକ୍ଷାର ମହତ ଉଦ୍ଦେଶ୍ୟ ନେଇ ଯୁଦ୍ଧ ଶେଷରେ ୧୯୪୫ ମସିହା ଅକ୍ଟୋବର ୨୪ ତାରିଖରେ ଜାତିସଂଘ ଜନ୍ମ ନେଇଛି । ଭବିଷ୍ୟତ ବଂଶଧରମାନଙ୍କୁ ରକ୍ତପାତ ଏବଂ ଯୁଦ୍ଧର ବିଭୀଷିକା ଠାରୁ ଦୂରେଇ ରଖିବାକୁ ପ୍ରତିଶ୍ରୁତିବଦ୍ଧ ହୋଇ ରାଷ୍ଟ୍ରନାୟକମାନେ ଜାତିସଂଘର ସମ୍ବିଧାନକୁ ସ୍ୱୀକୃତି ପ୍ରଦାନ କରିଛନ୍ତି । ବିଶ୍ୱରେ ମାନବିକ ଅଧିକାରର ସୁରକ୍ଷା ନେଇ ସୃଷ୍ଟି ହୋଇଥିବା ଅନିଶ୍ଚିତତାର ଅବସାନ ଘଟାଇ ଜାତିସଂଘର ସାଧାରଣ ପରିଷଦ ୧୯୪୮ ମସିହା ଡିସେମ୍ବର ୧୦ ତାରିଖରେ ''ବିଶ୍ୱ ମାନବିକ ଅଧିକାର'' ଘୋଷଣା ପତ୍ର ସ୍ୱାକ୍ଷର କରିଛି । ବିଶ୍ୱ ମାନବ ସମାଜର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ସବୁ ଦେଶବାସୀଙ୍କର ମୌଳିକ ଅଧିକାର ସୁରକ୍ଷାକୁ ନେଇ ଏହି ଘୋଷଣାପତ୍ର ଗ୍ରହଣ କରାଯାଇଛି । ଏହାଛଡ଼ା ସଂପ୍ରତି ବିଶ୍ୱରେ ଅନେକ ଜାତୀୟ ଏବଂ ଅନ୍ତର୍ଜାତୀୟ ସଂଗଠନ ମଧ୍ୟ ବିଶ୍ୱରେ ମାନବିକ ଅଧିକାରର

ସୁରକ୍ଷା ପାଇଁ ପ୍ରୟାସ ଜାରି ରଖିଛନ୍ତି । କିନ୍ତୁ ଏତେସବୁ ଜାତୀୟ ଅନ୍ତର୍ଜାତୀୟ ଆଇନ ସତ୍ତ୍ୱେ ତିବ୍ବତ ଭଳି ଏକ ଶାନ୍ତ ସୁନ୍ଦର, ବଣ ପାହାଡ଼ ଘେରା ଧାର୍ମିକ ରାଜ୍ୟରେ ମାନବିକ ଅଧିକାରର ଯେପରି ଖୋଲାଖୋଲି ଉଲ୍ଲଙ୍ଘନ କରାଯାଉଛି ତାହା ଅତ୍ୟନ୍ତ ପରିତାପର ବିଷୟ । ଆଦିମ କାଳରୁ ତିବ୍ବତର ଏକ ସ୍ୱତନ୍ତ୍ର ସଭ୍ୟତା ଏବଂ ସଂସ୍କୃତି ରହିଅଛି । ଏହାର ଧର୍ମଭାବନା, ସାମାଜିକ ଚଳଣି, ରାଜନୈତିକ ଅବସ୍ଥା ଏବଂ ଭୌଗୋଳିକ ପରିବେଶର ଏକ ସ୍ୱତନ୍ତ୍ରତା ରହିଛି । ତିବ୍ବତର ଦକ୍ଷିଣକୁ ଭାରତ ଏବଂ ଉତ୍ତରକୁ ଚୀନ୍ ଅବସ୍ଥିତ । ଏହାର ଆୟତନ ୧.୩ ମିଲିୟନ ବର୍ଗ କି.ମି. ଅଟେ । ହିମାଳୟ ପାଦ ଦେଶରେ ଏକ ନୈସର୍ଗିକ ଏବଂ ପ୍ରାକୃତିକ ମନୋଜ୍ଞ ପରିବେଶ ମଧ୍ୟରେ ଏହାର ଅବସ୍ଥିତି । ଏକବିଂଶ ଶତାବ୍ଦୀରେ ମଧ୍ୟ ଏହି ଶାନ୍ତ, ସରଳ ଦେଶଟି ସଂପ୍ରତି ଆଧୁନିକତା ଠାରୁ ଅନେକ ଦୂରରେ । ବିଶ୍ୱରେ ଶାନ୍ତିର ବାର୍ତ୍ତାବହ ବୌଦ୍ଧ ଧର୍ମକୁ ପାଥେୟ କରି ଏମାନଙ୍କର ଦୈନନ୍ଦିନ ଜୀବନର ବହୁସମୟ କଟେ ।

କିନ୍ତୁ, ୧୯୫୧ ମସିହାରେ ଚୀନ୍ ଏହାକୁ ଅକ୍ତିଆର କଲାପରଠାରୁ ଏଠାରେ ଯେପରି ଅମାନୁଷିକ ଦମନଲୀଳା ଚଳାଇଛି ତାହା ବିଶ୍ୱାସ କରିହେବ ନାହିଁ । ଚୀନ୍‌ର ସାମ୍ୟବାଦୀ ସରକାର ଏଠାରେ ଖୋଲା ଖୋଲି ଭାବରେ ମାନବିକ ଅଧିକାରକୁ ଯେପରି ଉଲ୍ଲଙ୍ଘନ କରୁଛି ତାହା ଅତ୍ୟନ୍ତ ପରିତାପର ବିଷୟ । ଅଧୁନା ସମଗ୍ର ବିଶ୍ୱରେ ମାନବିକ ଅଧିକାରର ସୁରକ୍ଷା ନେଇ ଅନେକ ଦେଶ, ଅନେକ ଆନ୍ତର୍ଜାତୀୟ ସଂଗଠନ ଏବଂ ସର୍ବୋପରି ଜାତିସଂଘ ଡିଣ୍ଡିମ ପିଟୁଥିବା ବେଳେ ତିବ୍ବତ ପ୍ରତି କାହାର ନଜର ନାହିଁ । ଏକ ବିଶାଳ ଦେଶର କର୍ତ୍ତୃତ୍ୱ ଆଗରେ ତିବ୍ବତବାସୀ ନତମସ୍ତକ ହୋଇ ରହିଛନ୍ତି । ସେମାନଙ୍କର କୌଣସିଥିରେ ପୂର୍ଣ୍ଣ ସ୍ୱାଧୀନତା ନାହିଁ । ସେମାନଙ୍କର ଧାର୍ମିକ ଏବଂ ସାମାଜିକ ଚଳଣିକୁ ଚୀନ୍ ପ୍ରଭାବିତ କରି ରଖିଛି । ୧୯୪୮ ମସିହା ଡିସେମ୍ବର ୧୦ ତାରିଖରେ ଘୋଷିତ ହୋଇଥିବା ବିଶ୍ୱମାନବିକ ଅଧିକାର ଘୋଷଣା ପତ୍ରରେ ଉଲ୍ଲେଖ ଥିବା ୩୦ଟି ଅନୁଚ୍ଛେଦକୁ ଆଲୋଚନା କଲେ ଦେଖାଯାଏ ଯେ ଚୀନ୍ ପ୍ରାୟ ସବୁ ଅନୁଚ୍ଛେଦ ଗୁଡ଼ିକୁ ତିବ୍ବତରେ ଉଲ୍ଲଙ୍ଘନ କରୁଛି ଏବଂ ଏକ ସୁଚିନ୍ତିତ ଏବଂ ସୁପରିକଳ୍ପିତ ଯୋଜନା ଅନୁଯାୟୀ ତିବ୍ବତ ଜାତିକୁ ଧରାପୃଷ୍ଠରୁ ନିଶ୍ଚିହ୍ନ କରିବା ପାଇଁ ଚେଷ୍ଟା କରୁଛି ।

ଘୋଷଣାପତ୍ର ଧାରା (୩)ରେ ଉଲ୍ଲେଖ ଅଛି ପ୍ରତ୍ୟେକ ବ୍ୟକ୍ତିର ବଞ୍ଚିବାର ଅଧିକାର, ସ୍ୱତନ୍ତ୍ରତାର ଅଧିକାର ଏବଂ ସୁରକ୍ଷାର ଅଧିକାର ରହିଛି । କିନ୍ତୁ ତିବ୍ବତବାସୀ, ଚୀନ ଆକ୍ରମଣ ପରଠାରୁ ଏହି ସବୁ ଅଧିକାର ଠାରୁ ଅନେକ ଦୂରରେ । ସେମାନେ ନିଜ ଦେଶରେ ନିଜେ ସୁରକ୍ଷିତ ନୁହଁନ୍ତି । ଏଥିପାଇଁ ଅନେକେ ପଡୋଶୀ ନେପାଳ ଏବଂ ଭାରତରେ ଶରଣାର୍ଥୀ ରୂପେ ରହିଛନ୍ତି । ଧାରା (୪)ରେ କୌଣସି ବ୍ୟକ୍ତିକୁ ଦାସତ୍ୱ ପ୍ରଥାରେ ବାନ୍ଧି ରଖାଯାଇ ପାରିବ ନାହିଁ ବୋଲି ଉଲ୍ଲେଖ କରାଯାଇଛି । କିନ୍ତୁ ବର୍ତ୍ତମାନ ଚୀନ ତିବ୍ବତର ଲୋକମାନଙ୍କୁ ପଶୁପରି

ବିବେଚନା କରୁଛି । ସେମାନଙ୍କର ପ୍ରତ୍ୟେକ କାର୍ଯ୍ୟରେ ଚୀନ୍ ସରକାର ଅଙ୍କୁଶ ଲଗାଉଛନ୍ତି । ସେହିପରି ଧାରା (୫)ରେ ଉଲ୍ଲେଖ ଅଛି ଯେ କୌଣସି ବ୍ୟକ୍ତିକୁ ଅମାନୁଷିକ ବା ପାଶବିକ ବ୍ୟବହାର କରାଯିବ ନାହିଁ । କିମ୍ବା ନିର୍ମମ ଦଣ୍ଡ ଦିଆଯିବ ନାହିଁ । କିନ୍ତୁ ଚୀନ୍‌ର ସୈନ୍ୟମାନେ ତିବ୍ବତରେ ଯେଉଁଭଳି ଅମାନୁଷିକ କାର୍ଯ୍ୟ ଚଲାଇଛନ୍ତି ତାହାର ତୁଳନା ନାହିଁ । ତିବ୍ବତର ଝିଅ ବୋହୂଙ୍କର ଇଜ୍ଜତ୍ ଲୁଟିବା ଠାରୁ ଆରମ୍ଭ କରି ସମସ୍ତ ପ୍ରକାରର ଅମାନୁଷିକ କାର୍ଯ୍ୟକଳାପ ଚୀନ ସେଠାରେ ଚଲାଇ ଅଛି । ଯେ ତାର ବିରୋଧ କରିଛି ତାହାର ଜବାବ ବନ୍ଧୁକ ମୁନରେ ଦିଆଯାଉଛି । ଯିଏ ସ୍ୱାଧୀନତା ଦାବି କରୁଛି ସେ ଚୀନ ସୈନ୍ୟଙ୍କ ଦ୍ୱାରା ବନ୍ଦୀ ହୋଇ ଚୀନ କାରାଗାରରେ ସମୟ କାଟୁଛି ।

ସେହିପରି ଧାରା (୯) ଅନୁସାରେ କୌଣସି ବ୍ୟକ୍ତିକୁ ସ୍ୱେଚ୍ଛାଚାରୀ ଭାବରେ ବନ୍ଦୀ, ଅଟକ, କିମ୍ବା ନିର୍ବାସନ ଦିଆଯିବ ନାହଁ ବୋଲି ବ୍ୟବସ୍ଥା ଅଛି । କିନ୍ତୁ ଏହାର ଖୋଲାଖୋଲି ଉଲ୍ଲଙ୍ଘନ କରି ଚୀନ୍ ତିବ୍ବତରେ ମନମୁଖୀ ଏବଂ ସ୍ୱେଚ୍ଛାଚାରୀ ଦମନଲୀଳା ଚଲାଇଛି । ଯେଉଁମାନେ ଚୀନ୍‌ର ଅମାନୁଷିକ କାର୍ଯ୍ୟକଳାପ ବିରୁଦ୍ଧରେ ମୁହଁ ଖୋଲୁଛନ୍ତି ସେମାନେ ଚୀନ୍ ସରକାରଙ୍କ ଆକ୍ରୋଶର ଶିକାର ହେଉଛନ୍ତି । ସେମାନଙ୍କୁ ମନଇଚ୍ଛା ଚୀନର ସୈନ୍ୟମାନେ ଧରିନେଇ ବିନାବିଚାରରେ ଚୀନ୍ କାରାଗାରରେ ଅନିର୍ଦ୍ଦିଷ୍ଟ କାଳ ପାଇଁ ଅଟକ ରଖୁଛନ୍ତି ଏବଂ ନାନା ପ୍ରକାର ଶାରୀରିକ ଏବଂ ମାନସିକ ନିର୍ଯ୍ୟାତନା ଦେଉଛନ୍ତି । ଅନେକେ ଚୀନର ଏହି ଦମନଲୀଳା ସହ୍ୟ କରିନପାରି ଭାରତ କିମ୍ବା ନେପାଳରେ ଆତ୍ମଗୋପନ କରୁଛନ୍ତି ।

ଘୋଷଣାପତ୍ରର ଦ୍ୱାଦଶ ଧାରାରେ ଉଲ୍ଲେଖ ଅଛି ଯେ କୌଣସି ବ୍ୟକ୍ତିର ବ୍ୟକ୍ତିଗତ ଜୀବନ, ତାର ପରିବାର କିମ୍ବା ତାର ଗୃହରେ ପ୍ରବେଶ କିମ୍ବା ହସ୍ତକ୍ଷେପ କରାଯିବ ନାହିଁ । କିନ୍ତୁ ମୋଟାମୋଟି କହିବାକୁ ଗଲେ ୧୯୫୧ ମସିହା ପରଠାରୁ ଚୀନ ତିବ୍ବତ ଅକ୍ତିଆର କଲାପରେ ତିବ୍ବତବାସୀଙ୍କର କୌଣସି ବ୍ୟକ୍ତିଗତ ଜୀବନ ନାହିଁ କହିଲେ ଚଳେ । ପ୍ରତ୍ୟକ୍ଷ ଏବଂ ପରୋକ୍ଷଭାବରେ ଚୀନ ସରକାର ତିବ୍ବତ ଜନସାଧାରଣଙ୍କର ବ୍ୟକ୍ତିଗତ ଜୀବନକୁ ପ୍ରଭାବିତ କରୁଛି । ଏହା ଘୋଷଣା ପତ୍ରର ବିରୋଧି ଅଟେ । ସଂକ୍ଷେପରେ କହିବାକୁ ଗଲେ ତିବ୍ବତବାସୀଙ୍କ ବ୍ୟକ୍ତିଗତ ଜୀବନ ଆଜି ଚୀନ ସରକାରଙ୍କ ହାତରେ ବନ୍ଦି ପଡ଼ୁଛି ।

ଘୋଷଣାପତ୍ରର ତ୍ରୟୋଦଶ ଧାରା ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତି ନିଜ ଦେଶ ସୀମା ଭିତରେ ଅବାଧରେ ଚଳପ୍ରଚଳ କରିବାର ଏବଂ ଯେକୌଣସି ସ୍ଥାନରେ ବସବାସ କରିବାର ଅଧିକାର ରହିଛି । କିନ୍ତୁ ଚୀନ୍ ତିବ୍ବତକୁ ଅକ୍ତିଆର କଲାପରେ ସେମାନଙ୍କ ମୁକ୍ତ ଓ ଅବାଧ ଚଳପ୍ରଚଳରେ ବାଧା ସୃଷ୍ଟି ହୋଇଛି । ଅଧିକାଂଶ ସ୍ଥାନକୁ ଚୀନ କବଳିତ କରି ରଖିଛି । ନିଜ ଦେଶରେ ତିବ୍ବତର ଜନସାଧାରଣ ଆଜି ବିଦେଶୀ ନାଗରିକଙ୍କ ଭଳି ଚଳୁଛନ୍ତି ।

ସେହିପରି ପଞ୍ଚଦଶ ଧାରା ଅନୁଯାୟୀ ପ୍ରତ୍ୟେକ ନାଗରିକଙ୍କର ଜାତୀୟତାର ଅଧିକାର

ରହିଛି । କିନ୍ତୁ ଚୀନ ଏହି ଅଧିକାରକୁ ସ୍ୱୀକୃତି ଦେବାକୁ ନାରାଜ । ଆଦିମ କାଳରୁ ତିବ୍ବତ ଏକ ସ୍ୱତନ୍ତ୍ର ରାଜ୍ୟ ହୋଇଥିଲେ ମଧ୍ୟ ଚୀନ୍ ଏହାକୁ ସ୍ୱୀକୃତି ଦେବାକୁ ନାରାଜ । ବ୍ରିଟିଶ ସରକାର ୧୭୭୪ ମସିହାରେ ୱାରେନ୍ ହେଷ୍ଟିଙ୍ଗସ୍‌ଙ୍କ ସମୟରେ ତିବ୍ବତ୍‌କୁ ଏକ ସ୍ୱତନ୍ତ୍ର ରାଜ୍ୟ ଭାବରେ ବିବେଚନା କରି ତା ସହିତ ସାମରିକ ଓ ବାଣିଜ୍ୟିକ ଚୁକ୍ତି ସ୍ୱାକ୍ଷରିତ କରିଥିଲେ । ୱାରେନ୍ ହେଷ୍ଟିଙ୍ଗସ୍‌ଙ୍କ ତରଫରୁ ମିଃ. ବୋଗଲସ୍ ତିବ୍ବତ ରାଜ୍ୟକୁ ଯାଇ ସେଠାରେ ଶାସନମୁଖ୍ୟ ଆସିଲାମାଙ୍କ ସହିତ ଚୁକ୍ତି ସଂପାଦନ କରିଥିଲେ । ତିବ୍ବତର ସାମାଜିକ, ଧାର୍ମିକ, ଆର୍ଥନୀତିକ, ରାଜନୈତିକ ଏବଂ ଭୌଗୋଳିକ ଦିଗଗୁଡ଼ିକୁ ବିଚାର କଲେ ଏହା ସୁସ୍ପଷ୍ଟ ଯେ ତିବ୍ବତ ଏକ ସ୍ୱତନ୍ତ୍ର ରାଜ୍ୟ । କିନ୍ତୁ ଚୀନ୍ ତାର ଅର୍ଥବଳ ଓ ସୈନ୍ୟବଳ ପ୍ରୟୋଗକରି ତିବ୍ବତକୁ ନିଜ ଅକ୍ତିଆରରେ ରଖିଛି । ଚୀନ୍‌ର ଉଗ୍ର ସାମ୍ରାଜ୍ୟବାଦ ନୀତି ପାଇଁ ତିବ୍ବତୀୟମାନେ ନିଜ ରାଜ୍ୟକୁ ହରାଇଛନ୍ତି । ୧୯୫୯ ମସିହା ଠାରୁ ତିବତ୍ ଧର୍ମଗୁରୁ ଦଲାଇଲାମା ଏବଂ ଷୋଡଶ କର୍ମପ୍ପାଙ୍କ ସମେତ ପ୍ରାୟ ୧ ଲକ୍ଷ ୫୦ ହଜାର ଲୋକ ତିବ୍ବତରୁ ଆସି ଭାରତର ବିଭିନ୍ନ ରାଜ୍ୟରେ ରହିଛନ୍ତି । ଦଲାଇଲାମା ହିମାଚଳ ପ୍ରଦେଶର ଧର୍ମଶାଳାଠାରେ ତିବ୍ବତ୍‌ର ନିର୍ବାସିତ ସରକାର ଚଳାଉଛନ୍ତି । ଇତିମଧ୍ୟରେ ଅର୍ଦ୍ଧଶତାବ୍ଦୀ ଅତିବାହିତ ହୋଇଯାଇଥିଲେ ମଧ୍ୟ ଚୀନର ତାବ୍ବତ ନୀତିରେ କୌଣସି ପରିବର୍ତ୍ତନ ଘଟିନଥିବା ଏକ ଦୁଃଖଦ ବିଷୟ ।

ଧାରା (୧୬)ରେ ପରିବାରକୁ ଏକ ପ୍ରାକୃତିକ ଏବଂ ମୌଳିକ ସଂଗଠନ ଭାବରେ ବର୍ଣ୍ଣନା କରାଯାଇଛି । ପ୍ରତ୍ୟେକ ରାଷ୍ଟ୍ର ଏବଂ ସମାଜକୁ ସୁରକ୍ଷା ଦେବା ପାଇଁ ଉଲ୍ଲେଖ ଅଛି । ଏଥିସହିତ ଆହୁରି ମଧ୍ୟ କୁହାଯାଇଛି ଯେ କୌଣସି ସାବାଳକ ବ୍ୟକ୍ତି, ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ବିବାହ କରି ପରିବାର ଗଠନ କରିପାରିବ । ପରିବାର ଗଠନ କରିବା ପ୍ରତ୍ୟେକ ନାଗରିକଙ୍କର ଏକ ମୌଳିକ ଅଧିକାର ଅଟେ । କିନ୍ତୁ ବିଡ଼ମ୍ବନାର ବିଷୟ ତିବ୍ବତବାସୀ ଆଜି ଏହି ଅଧିକାରରୁ ବଞ୍ଚିତ । ଚୀନ୍ ସରକାର ସୁପରିକଳ୍ପିତ ଭାବରେ ତିବ୍ବତ୍ ଜାତିକୁ ଧରାପୃଷ୍ଠରୁ ବିଲୋପ କରିବା ପାଇଁ ଯୋଜନା ଚଳାଉଛି । ଚୀନ୍‌ର ପୁଅମାନେ ତିବ୍ବତ୍‌ର ଝିଅମାନଙ୍କୁ ଜୋର୍ କରି ସେମାନଙ୍କ ଇଚ୍ଛା ବିରୁଦ୍ଧରେ ବିବାହ କରୁଛନ୍ତି । ଯେଉଁ ମହିଳାମାନେ ଏହାର ବିରୋଧ କରୁଛନ୍ତି ସେମାନଙ୍କୁ ବିଭିନ୍ନ ପ୍ରକାର ଯୌନ ନିର୍ଯାତନା ଦିଆଯାଉଛି । ଅନେକ ମହିଳା ନିଜ ଇଚ୍ଛା ବିରୁଦ୍ଧରେ ଗର୍ଭଧାରଣ କରି ଚୀନ୍ ଜାତିର ସନ୍ତାନଙ୍କୁ ଜନ୍ମ ଦେଉଛନ୍ତି । ତିବ୍ବତ୍‌ର ଭବିଷ୍ୟତ ଜନ ଆନ୍ଦୋଳନକୁ ଆଖିଆଗରେ ରଖି ଚୀନ୍ ଏହି ସୁପରିକଳ୍ପିତ ଉଦ୍ୟମରେ ତିବ୍ବତ ଜାତିକୁ ସମ୍ପୂର୍ଣ୍ଣ ବିଲୋପ କରିବା ପାଇଁ ଚେଷ୍ଟା କରୁଛି ।

ଧାରା (୧୮) ଅନୁଯାୟୀ ବିଶ୍ୱର ପ୍ରତ୍ୟେକ ନାଗରିକଙ୍କର ମୁକ୍ତ ଭାବରେ ଚିନ୍ତା କରିବା ଏବଂ ଧର୍ମଭାବନାର ଅଧିକାର ରହିଛି । ପ୍ରତ୍ୟେକ ବ୍ୟକ୍ତି ବ୍ୟକ୍ତିଗତ ବା ସାମୂହିକ ଭାବରେ ନିଜର ଧାର୍ମିକ ଅନୁଷ୍ଠାନ ଏବଂ ଧାର୍ମିକ ରୀତି ନୀତି ଏବଂ ପୂଜାପାଳନ କରିବାର

ଅଧିକାର ରହିଛି । କିନ୍ତୁ ଏସବୁ ଅଧିକାର ତିବ୍ବତ୍‌ବାସୀଙ୍କ ପାଇଁ ମୂଲ୍ୟହୀନ । ଯଦିଓ ସେଠାର ସମସ୍ତ ଅଧିବାସୀ ବୌଦ୍ଧ ଧର୍ମାବଲମ୍ବୀ କିନ୍ତୁ ସେମାନଙ୍କର ସମସ୍ତ ରୀତିନୀତି ଚୀନ୍‌ଠାରୁ ଭିନ୍ନ । ସେମାନଙ୍କର ଏକ ସ୍ୱତନ୍ତ୍ର ଧାର୍ମିକ ସଂସ୍କୃତି ରହିଛି । କିନ୍ତୁ ସେମାନଙ୍କର ଏହି ସ୍ୱତନ୍ତ୍ରତାକୁ ଚୀନ୍ ସ୍ୱୀକୃତି ପ୍ରଦାନ କରୁନାହିଁ । ତିବ୍ବତ୍‌ର ୧୬ଜଣ କର୍ମପ୍ପାଙ୍କ ମଧ୍ୟରୁ ଜଣକୁ ହେଲେ ମଧ୍ୟ ଚୀନ୍ ସ୍ୱୀକୃତି ପ୍ରଦାନ କରିନାହିଁ । ଷୋଡଶ କର୍ମପ୍ପା ରାନ୍‌ଜଙ୍ଗ ରିଗ୍‌ପେ ଡ଼ୋରଜି ଦଲାଇଲାମାଙ୍କ ସହିତ ଭାରତ ଚାଲିଆସି ୧୯୬୬ରେ ସିକିମ୍‌ରେ ରୁମ୍‌ଟେକ୍ ଆଶ୍ରମ ପ୍ରତିଷ୍ଠା କରି ୧୯୮୧ ମସିହାରେ ଏହିଠାରେ ପ୍ରାଣତ୍ୟାଗ କରିଥିଲେ । କିନ୍ତୁ ଏହାପରେ ୧୭ତମ କର୍ମପ୍ପା ଭଗ୍‌ୟେନ୍ ତିନଲେ ଡ଼ୋରଜିଙ୍କୁ ଚୀନ୍ ପ୍ରଥମ ଥର ପାଇଁ ସ୍ୱୀକୃତି ପ୍ରଦାନ କରିଛି । ସେ ଚୀନ୍ ବାଳକ ହୋଇଥିବାରୁ ରୁମ୍‌ଟେକ୍ ଆଶ୍ରମର ଅନେକ ଅଧିବାସୀ ଏହାକୁ ଏକ ଷଡଯନ୍ତ୍ର ଭାବରେ ବିବେଚନା କରି ୧୭ତମ କର୍ମପ୍ପାଙ୍କୁ ସ୍ୱୀକୃତି ଦେବାଲାଗି କୁଣ୍ଠା ପ୍ରକାଶ କରୁଛନ୍ତି । ବର୍ତ୍ତମାନ ୨୦୦୦ ମସିହାରୁ ଭଗ୍‌ୟେନ ତ୍ରିନ୍‌ଲେ ଡୋରିଜି ଗୁପ୍ତଭାବରେ ଚୀନ୍ ଭୟରେ ଭାରତକୁ ଆସି ଏଠାରେ ବସବାସ କରୁଛନ୍ତି ।

ଧାରା (୧୯) ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତିଙ୍କର ନିଜସ୍ୱ ଚିନ୍ତାର ପରିପ୍ରକାଶ କରିବାର ଅଧିକାର ରହିଛି ଏବଂ ଯେକୌଣସି ଗଣମାଧ୍ୟମରେ ନିଜ ମତବ୍ୟକ୍ତ କରିବାର ହକ୍ ଅଛି । କିନ୍ତୁ ତିବ୍ବତୀମାନେ ଚୀନ ବିରୁଦ୍ଧରେ କୌଣସି ମତବ୍ୟକ୍ତ କରିବାର ଅଧିକାର ନାହିଁ । ସେମାନଙ୍କର ଗଣମାଧ୍ୟମକୁ ଚୀନ ସରକାର ନିୟନ୍ତ୍ରଣ କରି ରଖିଛନ୍ତି । ଚୀନ ସରକାର ସାମ୍ୟବାଦୀ ସରକାର ହୋଇଥିବାରୁ ଏହା ମୁକ୍ତ ଜନମତ ବିରୋଧୀ ଅଟେ । ଯିଏ ସ୍ୱତନ୍ତ୍ରତା ଦାବି କଲା, ମୁକ୍ତ ଭାବରେ ମତବ୍ୟକ୍ତ କଲା ସେ ହେବ ସାମ୍ୟବାଦର ଶତ୍ରୁ । ତେଣୁ ନିଜ ଦେଶରେ ମଧ୍ୟ ତିବ୍ବତୀୟମାନେ ମୁକ୍ତ ଭାବରେ ନିଜ ମତବ୍ୟକ୍ତ କରିବାକୁ ଅସମର୍ଥ ।

ଧାରା (୨୧) ଅନୁଯାୟୀ ପ୍ରତ୍ୟେକ ନାଗରିକ ନିଜ ସରକାର ଗଠନ କରିବାର ଅଧିକାର ରହିଛି । ମୁକ୍ତ ଜନମତ ପ୍ରତ୍ୟେକ ସରକାରର ମୂଳଭିତ୍ତି ହେବା ଦରକାର ବୋଲି ଏହି ଧାରାରେ ଉଲ୍ଲେଖ ରହିଛି । କିନ୍ତୁ ତିବ୍ବତୀ ମାନଙ୍କ ଦ୍ୱାରା ଗଠିତ ସରକାରକୁ ଚୀନ ମାନ୍ୟତା ଦେଉନାହିଁ । ଧର୍ମଶାଳାରେ ଦଲାଇଲାମାଙ୍କ ଦ୍ୱାରା ଚାଲିଥିବା ତିବ୍ବତ୍ ନିର୍ବାସନ ସରକାରକୁ ତିବ୍ବତବାସୀ ସମର୍ଥନ କରୁଥିଲେ ମଧ୍ୟ ଚୀନ୍ ଏହାକୁ ସ୍ୱୀକୃତି ଦେଉନାହିଁ । ତିବ୍ବତର ସଂସଦ ୧୯୫୯ ମସିହା ଠାରୁ ଦଲାଇଲାମାଙ୍କ ନେତୃତ୍ୱରେ ଧର୍ମଶାଳାଠାରେ ଚାଲିଛି । ଏହିଠାରୁ ତିବ୍ବତ୍‌ପାଇଁ ସମସ୍ତ ନୀତିନିୟମ ନିର୍ଦ୍ଧାରଣ କରାଯାଉଛି । କିନ୍ତୁ ଦୁଃଖର ବିଷୟ, ଚୀନର ବିଶାଳ ସୈନ୍ୟବଳ ଓ ବାହୁବଳ ସାମ୍ରାଜ୍ୟବାଦ ନୀତି ଆଗରେ ତିବ୍ବତ୍‌ବାସୀଙ୍କ ରାଜନୈତିକ ଅଧିକାର ବଳିପଡୁଛି ।

ଧାରା (୨୭) ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତି ନିଜ ସଂପ୍ରଦାୟର ସାଂସ୍କୃତିକ ପର୍ବ

ପର୍ବାଣାରେ ଅବାଧ ଭାବରେ ଯୋଗ ଦେବାର ଅଧିକାର ରହିଛି । କିନ୍ତୁ ତିବ୍ବତର ଜନସାଧାରଣଙ୍କ ଠାରୁ ଚୀନ୍ ଜୋର୍‌କରି ଏହି ଅଧିକାର ଛଡ଼ାଇ ନେଇଛି । ତିବ୍ବତର ବୌଦ୍ଧ ଧର୍ମ ଉପରେ ନାନା ପ୍ରକାର ଅଙ୍କୁଶ ଲଗାଯାଇ ସେମାନଙ୍କର ସ୍ୱତନ୍ତ୍ରତାକୁ ନଷ୍ଟ କରାଯାଉଛି । ସେହିପରି ତିବ୍ବତର ଧର୍ମଗୁରୁ ଦଲାଇଲାମାଙ୍କୁ ତିବ୍ବତୀୟ ମାନଙ୍କର ପ୍ରତିନିଧିଭାବେ ଚୀନ ସ୍ୱୀକୃତି ଦେଉନାହିଁ କିମ୍ବା ତାଙ୍କ ଦ୍ୱାରା ଚାଲୁଥିବା ନିର୍ବାସିତ ସରକାରଙ୍କୁ ମଧ୍ୟ ସ୍ୱୀକୃତି ଦେଉନାହିଁ । ୧୯୯୫ ମସିହାରେ ନୂତନ ପଞ୍ଚେମଲାମାଙ୍କୁ ନେଇ ଚୀନ ଓ ଦଲାଇଲାମାଙ୍କ ମଧ୍ୟରେ ମତପାର୍ଥକ୍ୟ ହୋଇଥିଲା । ଏବଂ ଚୀନ ଦଲାଇଲାମାଙ୍କ ଦ୍ୱାରା ସ୍ୱୀକୃତ ପଞ୍ଚେମଲାମାଙ୍କୁ ସ୍ୱୀକୃତି ଦେଇନଥିଲା ।

ମୋଟ ଉପରେ ଆପଣାକୁ ସାମ୍ୟବାଦୀ କହୁଥିବା ଚୀନ ଦେଶ ପୃଥିବୀରେ ମାନବିକ ଅଧିକାରର ଘୋର ଶତ୍ରୁ ଭାବରେ ଛିଡ଼ା ହୋଇଛି । ସେହିପରି ଭାବରେ ଦେଖିବାକୁ ଗଲେ ୧୯୪୮ ମସିହାର ଜାତିସଂଘର ସାଧାରଣ ପରିଷଦ ଦ୍ୱାରା ଆଦୃତ ହୋଇଥିବା ବିଶ୍ୱ ମାନବିକ ଅଧିକାର ଘୋଷଣା ପତ୍ରକୁ ଚୀନ୍ ଖୋଲାଖୋଲି ଭାବରେ ଉଲ୍ଲଙ୍ଘନ କରୁଛି । ଚୀନ୍‌ର ଉଗ୍ର ସାମ୍ରାଜ୍ୟବାଦ ନୀତି ଦ୍ୱାରା ଅତିଷ୍ଠ ହୋଇ ଆଜି ହଜାର ହଜାର ତିବ୍ବତ୍ ନାଗରିକ ବିଶ୍ୱର ବିଭିନ୍ନ ଦେଶରେ ଯଥା ଆମେରିକା, କାନାଡା, ସ୍ୱିଜରଲ୍ୟାଣ୍ଡ, ନେପାଳ ଓ ଭାରତର ବିଭିନ୍ନ ରାଜ୍ୟରେ ଶରଣାର୍ଥୀ ଭାବରେ ରହିଛନ୍ତି । ଦଲାଇଲାମା ଧର୍ମଶାଳାଠାରେ ତିବ୍ବତ୍‌ର ନିର୍ବାସନ ସରକାର ଚଳାଇ ଆନ୍ତର୍ଜାତୀୟ ସ୍ତରରେ ତିବ୍ବତ୍ ସପକ୍ଷରେ ଜନମତ ସଂଗ୍ରହ କରୁଥିଲେ ମଧ୍ୟ ଚୀନ୍ ସେସବୁକୁ କର୍ଣ୍ଣପାତ କରୁନାହିଁ । ଅନେକ ସମୟରେ ଆମେରିକା, ଭାରତ ଏବଂ ଜାତିସଂଘ ଚୀନ୍ ସରକାର ଉପରେ ତିବ୍ବତର ସୁରକ୍ଷା ପାଇଁ ଚାପ ପକାଉଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ଏହାର ସୁଫଳ ମିଳିପାରିନାହିଁ କିମ୍ବା ତିବ୍ବତ ଏକ ସ୍ୱତନ୍ତ୍ର ରାଜ୍ୟ ରୂପେ ଜାତିସଂଘରେ ମାନ୍ୟତା ଦିଆଯାଇନାହିଁ । ଆଜିବି ଶହ ଶହ ତିବ୍ବତ୍ ନାଗରିକ ଭାରତ ଏବଂ ନେପାଳକୁ ଶରଣାର୍ଥୀ ଭାବରେ ଆସୁଛନ୍ତି । ଚୀନ୍ ଭଳି ଏକ ବିଶାଳ ଦେଶ ଆଗରେ କେହି ମୁହଁ ଖୋଲିବାକୁ ସାହସ କରୁନାହାନ୍ତି । ଆଜିବି ତିବ୍ବତ୍‌ର ମହିଳାମାନେ ଚୀନ୍ ନାଗରିକମାନଙ୍କର ଶୋଷଣର ଶିକାର ହେଉଛନ୍ତି ।

ଆଜିବି ଆନ୍ତର୍ଜାତୀୟ ସ୍ତରରେ ତିବ୍ବତ୍ ବିଷୟ ଅମୀମାଂସିତ ହୋଇ ରହିଛି । ବିଶ୍ୱଶାନ୍ତି ପାଇଁ ନୋବେଲ ପୁରସ୍କାର ପାଇଥିବା ଦଲାଇଲାମା ଚୀନ୍‌ର ତିବ୍ବତ୍ ସମ୍ପର୍କକୁ ଆଖି ଆଗରେ ରଖି ଦୁଇ ଦୁଇଟି ଶାନ୍ତି ପ୍ରସ୍ତାବ ଦେଇଥିଲେ ମଧ୍ୟ ଏଥିରୁ ଗୋଟିଏ ହେଲେ ଚୀନ୍‌ର ସ୍ୱୀକୃତି ପାଇନାହିଁ । ଏଥିରୁ କୌଣସିଟି ଆପୋଷ ଆଲୋଚନାର ଭିତ୍ତି ରୂପେ ମଧ୍ୟ ଗୃହୀତ ହୋଇନାହିଁ । ତିବ୍ବତର ସ୍ୱାଧୀନତା ପାଇଁ ଆଜି ଆଉ ଏକ ମୁକ୍ତି ସଂଗ୍ରାମ ଲୋଡ଼ା । ତିବ୍ବତ୍‌ର ଜନସାଧାରଣ ସଚେତନ ହୋଇ ଆନ୍ତର୍ଜାତୀୟ ସ୍ତରରେ ଜନମତ ଜାଗ୍ରତ କରି ଚୀନ୍ କର୍ତ୍ତୃତ୍ୱର ଅବସାନ ଘଟାଇଲେ ତାହା ହେବ ଜନ୍ମଭୂମି ପାଇଁ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

(ଲେଖକ ଜଣେ ଯୁବସାହିତ୍ୟିକ ଏବଂ ଦକ୍ଷିଣ ଏସୀୟ ବିଭାଗର ଗବେଷକ)

## ଭାରତ-ତିବ୍ବତ ମୈତ୍ରୀ ସଂଘ, ଓଡ଼ିଶା ଶାଖା

୧. ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ, ସଭାପତି
୨. ଡ. ବିମଳେନ୍ଦୁ ମହାନ୍ତି, କାର୍ଯ୍ୟକାରୀ ସଭାପତି
୩. ଡ. ଅଜୟ କୁମାର ମିଶ୍ର, ଉପସଭାପତି
୪. ପ୍ରଫେସର ସତ୍ୟନାରାୟଣ ମହାପାତ୍ର, ଉପସଭାପତି
୫. ଡ. ଦେବାଶିଷ ମହାପାତ୍ର, ସାଧାରଣ ସଂପାଦକ
୬. ଶ୍ରୀ ଶ୍ରୀକାନ୍ତ ପଣ୍ଡା, ଯୁଗ୍ମ ସଂପାଦକ
୭. ଶ୍ରୀ ଅର୍ଜ୍ଜୁନ ଚରଣ ସାମଲ, କୋଷାଧ୍ୟକ୍ଷ
୮. ଡ. ଭାଗିରଥୀ ଚୌଧୁରୀ, କୋଷାଧ୍ୟକ୍ଷ

### ଉପଦେଷ୍ଟା ମଣ୍ଡଳୀ

୧. ପ୍ରଫେସର ଡ. ସରସ୍ୱତୀ ସ୍ୱାଇଁ
୨. ପ୍ରଫେସର ଡ. କରୁଣା ସାଗର ବେହେରା
୩. ଶ୍ରୀ ଅବସର ବେଉରିଆ, ଆଇ.ଏଫ୍.ଏସ୍. (ରିଟାୟର୍ଡ)
୪. ଶ୍ରୀ ଡି. କେ. ରାୟ, ଆଇ.ଆର.ଏସ୍ (ରିଟାୟର୍ଡ)
୫. ଡ. ମହେଶ ପ୍ରସାଦ ଦାସ
୬. ଶ୍ରୀ ଗୌରହରି ଖୁଣ୍ଟିଆ
୭. ମେଜର ଜେନେରାଲ ବିଜୟ କୁମାର ଦାସ (ରିଟାୟର୍ଡ)

### କାର୍ଯ୍ୟକାରୀ ସଦସ୍ୟ

୧. ଶ୍ରୀ ଘନଶ୍ୟାମ ନାୟକ
୨. ଶ୍ରୀ ପ୍ରହ୍ଲାଦ ସାହୁ
୩. ଶ୍ରୀ ସାରଦା ଚରଣ ମହାନ୍ତି
୪. ଶ୍ରୀ ପ୍ରଫୁଲ୍ଲ କୁମାର ଧଳ
୫. ଶ୍ରୀ ସୁଶିଲ କୁମାର ଶର୍ମା
୬. ଶ୍ରୀ ହିମାଦ୍ରୀ ନାରାୟଣ ଦାସ
୭. ଶ୍ରୀମତୀ ତୃପ୍ତି ବେଉରିଆ
୮. ଶ୍ରୀ ନୃସିଂହ ଚରଣ ଜେନା
୯. ଶ୍ରୀ ପ୍ରଫୁଲ୍ଲ ସାମନ୍ତରାୟ
୧୦. ଡବ୍ଲୁ.ସିଡିଆର. ଦଶରଥି ନନ୍ଦନ କିଶୋର

### ସ୍ୱତନ୍ତ୍ର ନିମନ୍ତ୍ରିତ

୧. ଶ୍ରୀ କୃପାସିନ୍ଧୁ ସାହୁ
୨. ଶ୍ରୀମତୀ କବିତା ରାୟ

